# ପ୍ରକାଶକୀୟ......

ଆଜି (୯.୫.୨୦୦୬) ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କର ୧୪୫ତମ ପୁଣ୍ୟ ଜନ୍ମ ଜୟନ୍ତୀ ସାରା ଦେଶରେ ଆନନ୍ଦ ଉଲ୍ଲାସ ମଧ୍ୟରେ ପାଳିତ ହେଉଛି । ଏହି ସ୍ମରଣୀୟ ତିଥିରେ ଆମେ ତାଙ୍କର ସର୍ବଶ୍ରେଷ୍ଠ କୃତୀକୁ 'ଗୀତାଞ୍ଜଳି ' ଓଡ଼ିଆ ଅନୁବାଦ ସାହିତ୍ୟର ଏକ ଅର୍ଘ୍ୟରୂପେ ଅର୍ପଣକରି ଜାତୀୟ କର୍ତ୍ତବ୍ୟ ପାଳନର ଆନନ୍ଦ ଉପଭୋଗ କରୁଛୁ ।

ଏଥି ପୂର୍ବରୁ ଓଡ଼ିଆ ଭାଷାରେ ଗୀତାଞ୍ଜଳି ପ୍ରକାଶିତ ହୋଇଛି । ମନ୍ତ୍ର ବହୁବାର ଉଚ୍ଚାରିତ ହେଲାପରି, ବିଶ୍ୱବିଶ୍ରୁତ ଲେଖାଗୁଡ଼ିକ ବହୁଳ ଭାବରେ ପ୍ରକାଶିତ ହେବା ଉଚିତ । ଆମର ଏହି ସଦ୍ୟ ପ୍ରକାଶନଟି, ସେଇ ଉଦ୍ୟମର ଅଂଶ ବିଶେଷ । ଆଶା, ଏହା ପାଠକମାନଙ୍କୁ ଆନନ୍ଦ ଦେବା ସହିତ, ଆଧ୍ୟାତ୍ମିକ ସଂସ୍କୃତି ରକ୍ଷା ଦିଗରେ ସହାୟକ ହେବ ।

# ଗୀତାଞ୍ଜଳି

ରବୀନ୍ଦ୍ରନାଥ ଠାକୁର

ଭାଷାନ୍ତର :
ଶ୍ରୀ ନରସିଂହ ମିଶ୍ର

ପ୍ରକାଶକ :
ବୁକ୍ସ ଇଣ୍ଡିଆ ଇଣ୍ଟରନ୍ୟାସନାଲ
ପ୍ଲଟ ନଂ - ୬୩, ୟୁନିଟ୍ -୮
ଭୁବନେଶ୍ୱର - ୭୫୧୦ ୦୩
ଫୋନ୍- (୦୬୭୪): ୨୫୫୧୨୫୯

ପ୍ରଥମ ସଂସ୍କରଣ - ୨୦୦୬

ମୁଦ୍ରଣ:
ଶିବାନୀ ଆର୍ଟ ପ୍ରେସ୍
ଶାହାଦରା,
ନୂଆଦିଲ୍ଲୀ-୧୧୦୦୩୨

**GITANJALI**

*by*
Rabindra Nath Tagore

*Translated by* :
Sri Narasinha Mishra

*Published by :*
Books India International
2/35 Ansari Road, Darya Ganj
New Delhi-110002
Phone : 23254407

*Branch* : Bhubaneswar-3

First Edition : 2006

Printed at :
Colour Print
Vishwash Nagar
Shahdara, Delhi-110032

**Price : 140.00**

## ସୁଇଡ଼ିସ୍ ଏକାଡ଼େମୀର ନୋବେଲ୍ କମିଟି ଚେୟାରମ୍ୟାନ ହାରଲଡ଼୍ ହାଜରନଙ୍କ (Harald Hjarne) ଙ୍କଉଦ୍‌ଘାଟନୀ ଅଭିଭାଷଣର କିୟଦଅଂଶ

ଚଳିତ ବର୍ଷ, ଅତି ଉଚ୍ଚକୋଟୀର ଆଦର୍ଶପୂର୍ଣ୍ଣ ଭାବୋଦ୍ଦୀପକ କବିତା ଲେଖିଥିବା ଜଣେ ଆଙ୍ଗ୍ଲୋଇଣ୍ଡିଆନ କବି, 'ରବିନ୍ଦ୍ରନାଥ ଠାକୁରଙ୍କୁ, ସାହିତ୍ୟରେ, ନୋବେଲ ପୁରସ୍କାର ପ୍ରଦାନ କରାଯିବା ଅବସରରେ, ଏକାଡ଼େମୀ ଆନନ୍ଦର ସହିତ ଏହି ଗୌରବାବହ ସମ୍ମାନକୁ ଏପରି ଜଣେ ଲେଖକଙ୍କୁ ଦେବାକୁ ଯାଉଛି, ଯାହା ଅଲଫ୍ରେଡ୍ ନୋବେଲଙ୍କ ଅନ୍ତିମ ଇଚ୍ଛା ଏବଂ ଇଚ୍ଛାପତ୍ରର ସମସ୍ତ ସର୍ତ୍ତ ପୂରଣ କରିବାକୁ ସମର୍ଥ ହୋଇଛି ।

ତନ୍ନ ତନ୍ନ ପରୀକ୍ଷା ନିରୀକ୍ଷା ଓ ସର୍ବସମ୍ମତ ବିଚାର ବିମର୍ଶ ପରେ, ବିଚାରକ ମଣ୍ଡଳୀ ଏହି ସିଦ୍ଧାନ୍ତରେ ଉପନୀତ ହେଲେ ଯେ, "ଆଲୋଚ୍ୟ କବିତା ଗୁଡ଼ିକ, ଏକାଡ଼େମୀର ସ୍ଥିରୀକୃତ ମାନର ଅନୁରୂପ । ଲେଖକଙ୍କ ବାସଭୂମିର ଦୀର୍ଘ ଦୂରତା ଦୃଷ୍ଟିରୁ ସେ ଇଉରୋପୀୟ ସାହିତ୍ୟ ଜଗତରେ ଅପରିଚିତ ହେଲେ ମଧ୍ୟ, ଏକାଡ଼େମୀ, ମହାନ୍ କୃତି ପାଇଁ ତାଙ୍କୁ ପୁରସ୍କୃତ କରିବା ଦିଗରେ ଦ୍ୱିଧା ପ୍ରକାଶ କରିବାର କୌଣସି କାରଣ ନାହିଁ । ନୋବେଲ ପୁରସ୍କାରର ପ୍ରତିଷ୍ଠାତାଙ୍କ ଆନ୍ତରିକ ଇଚ୍ଛା ଏବଂ ନିରୂପିତ ସର୍ତ୍ତ ଅନୁସାରେ, ପ୍ରାର୍ଥୀ ଯେକୌଣସି ଦେଶ, ଜାତି ଓ ଧର୍ମର ହୁଅନ୍ତୁନା କାହିଁକି, ପ୍ରାର୍ଥୀ ଚୟନ ପ୍ରକ୍ରିୟାରେ ଜାତୀୟତାର କୌଣସି ବାଛ ବିଚାର ରହିବ ନାହିଁ ।"

ରବୀନ୍ଦ୍ରନାଥ ଠାକୁରଙ୍କ ରଚିତ ଗୀତାଞ୍ଜଳି (୧୯୧୨), ତାଙ୍କ ରଚିତ ଆଧ୍ୟାତ୍ମିକ ସଙ୍ଗୀତାବଳିର ଏକ ସୁନିର୍ବାଚିତ ସଂଗ୍ରହ, ଯାହାକି ନିର୍ବାଚନ ପ୍ରକ୍ରିୟାରେ ସମାଲୋଚକମାନଙ୍କ ଦୃଷ୍ଟି ଆକର୍ଷଣ କରିଛି ।

ରବୀନ୍ଦ୍ର ନାଥ ନିଜ ମାତୃଭାଷାର ଜଣେ ପ୍ରଖ୍ୟାତ ଲେଖକ । ମୂଳ ଗୀତାଞ୍ଜଳିର କବିତା ଗୁଡ଼ିକର ମୌଳିକତା ରକ୍ଷାକରି, ଏକ ନୂତନ ପରିଚ୍ଛଦ ଓ ପରିପାଟୀ ମଧ୍ୟରେ ସେ ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କ ସମ୍ମୁଖରେ ପରିବେଷଣ କରିଛନ୍ତି ଯାହା ସେମାନଙ୍କ ପାଇଁ ସରଳ ବୋଧଗମ୍ୟ ଓ ହୃଦ୍ୟ ହୋଇଛି ।"

X X X

# ଗୀତାଞ୍ଜଳି (SONG OFFERING)

## ରବୀନ୍ଦ୍ର ନାଥ ଠାକୁର

କବିଙ୍କ ଦ୍ୱାରା ମୂଳ ବଙ୍ଗଳାରୁ ଇଂରାଜିକୁ ଗଦ୍ୟାନୁବାଦିତ ପୁସ୍ତକ

## ମୁଖବନ୍ଧ

### ଡବ୍ଲ୍ୟୁ. ବି. ଇଟିସ୍

କିଛିଦିନ ପୂର୍ବେ, ମୁଁ ଜଣେ ପ୍ରତିଷ୍ଠିତ ବଙ୍ଗୀୟ ଭେଷଜ ବିଶେଷଜ୍ଞଙ୍କୁ କହିଲି, "ଜର୍ମାନ ଭାଷାଉପରେ ମୋର ଦଖଲ ନାହିଁ, ତଥାପି ଜଣେ ଜର୍ମାନ କବିଙ୍କର କୌଣସି ଅନୁବାଦ ମନକୁ ସ୍ପର୍ଶକଲେ, ମୁଁ ବ୍ରିଟିଶ ମ୍ୟୁଜିୟମକୁ ଯାଇ ତାଙ୍କ ଉପରେ ଲିଖିତ ଇଂରାଜି ପୁସ୍ତକ ଖୋଜି ପଢ଼େ । ଏହା ତାଙ୍କ ଜୀବନୀ ଓ ଚିନ୍ତାଧାରା ଉପରେ ମୋତେ ସମ୍ୟକ ସୂଚନା ଦେଇଥାଏ । ରବୀନ୍ଦ୍ରନାଥଙ୍କ ଏହି ଇଂରାଜୀ ଗଦ୍ୟାନୁବାଦଟି ମୋତେ ଏପରି ଚମତ୍କୃତ କରିଛି, ଯାହା ଅତୀତରେ ଅନ୍ୟ କେହି କହିପାରିନାହିଁ, ଅଥଚ ତାଙ୍କ ଜୀବନୀ ଏବଂ ମହାନ୍ ଚିନ୍ତାଧାରା ବିଷୟରେ କେହି ଜଣେ ଭାରତୀୟ ମୋତେ ନ କହିଲା ପର୍ଯ୍ୟନ୍ତ, ମୁଁ ତାଙ୍କ ବିଷୟରେ ଏକ ସ୍ପଷ୍ଟଚିତ୍ର ପାଇବା ସମ୍ଭବ ନୁହେଁ ।

ରବୀନ୍ଦ୍ର ସାହିତ୍ୟ ପ୍ରତି ମୋର ଗଭୀର ଆଗ୍ରହ ଥିବା ସେ ଅନୁଭବ କରି ମୋତେ କହିଲେ, "ମୁଁ ପ୍ରତିଦିନ ରବୀନ୍ଦ୍ର ସାହିତ୍ୟ ପାଠ କରେ । ତାଙ୍କ ମହାନ୍ ଲେଖାର ଗୋଟିଏ ବାକ୍ୟ ପଢ଼ିବା ଅର୍ଥ, ସଂସାରର ଦୁଃଖ କଷ୍ଟକୁ ଭୁଲିଯିବା । ଏଥିରେ ଥାଏ ସମ୍ମୋହନର ବାର୍ତ୍ତା ।

ମୁଁ କହିଲି, "ରିଚାର୍ଡ ଦ୍ୱିତୀୟଙ୍କ ରାଜୁତି କାଳରେ, ଇଂଲଣ୍ଡର କବିମାନଙ୍କ ଅବସ୍ଥା ଠିକ୍ ଏପରିଥିଲା । ସେ ସମୟରେ 'ପେଟ୍ରାର୍କ' କିମ୍ବା 'ଦାନ୍ତେ'ଙ୍କ ଲେଖାର କୌଣସି ଅନୁବାଦ ନଥିଲା । ତାଙ୍କ ବିଷୟରେ ଲଣ୍ଡନର କାହାକୁ ପଚାରିଲେ ସେ କୌଣସି ବହିର ସୂଚନା ଦେଇ ପାରନ୍ତି ନି ଏବଂ ବାଧ୍ୟହୋଇ ଫ୍ଲୋରାଷ୍ଟାଇନର କୌଣସି ବ୍ୟାଙ୍କ କର୍ମଚାରୀ କିମ୍ବା ଲମ୍ବାର୍ଡରର କୌଣସି ବଣିକଙ୍କୁ ପଚାରିବୁଝିବାକୁ

ହେବ ବୋଲି କହନ୍ତି । ମୁଁ ଯେପରି ଆପଣଙ୍କୁ ପଚାରି ବୁଝୁଛି । ମୋର ଧାରଣା ରବୀନ୍ଦ୍ରନାଥଙ୍କର ଏହି କବତାଗୁଡ଼ିକ ଅତ୍ୟନ୍ତ ସରଳ, ହୃଦୟସ୍ପର୍ଶୀ, ସ୍ୱୟଂସମ୍ପୂର୍ଣ୍ଣ ଏବଂ ପ୍ରାଚୁର୍ଯ୍ୟଭରା । ଆପଣଙ୍କ ଦେଶରେ ଏକ ନବ ଜାଗରଣର ସୂଚନା ଏଥିରୁ ମିଳେ । ୟ୍ୱ' ତାଠାରୁ ଶୁଣିବା ବ୍ୟତୀତ ମୁଁ ନିଜେ ଏହା ଜାଣିବା ସମ୍ଭବ ହୋଇନଥାନ୍ତା, ଯାହା ଆଜି ହୋଇପାରିଛି ।

ବିଶେଷଜ୍ଞ ମହାଶୟ ମୋତେ କହିଲେ, "ଆମର ଆଉ ମଧ୍ୟ ଅନେକ କବି ଅଛନ୍ତି, ଯେଉଁମାନେ ନିଶ୍ଚିତ ଭାବରେ ଖ୍ୟାତିସମ୍ପନ୍ନ କିନ୍ତୁ ସେମାନଙ୍କ ମଧ୍ୟରେ ରବୀନ୍ଦ୍ର ନାଥଙ୍କର ସୃଷ୍ଟିସମ୍ଭାର ଅତ୍ୟନ୍ତ ପ୍ରଭାବଶାଳୀ, ଏବଂ ଏକ ବିଶେଷ ମର୍ଯ୍ୟାଦାର ଅଧିକାରୀ । ଆମେ ରବୀନ୍ଦ୍ରଙ୍କ ସମୟକୁ ବଙ୍ଗ ସାହିତ୍ୟର ରବୀନ୍ଦ୍ରଯୁଗ ବୋଲି କହୁ । ସେ ଆମ ଭିତର ଯେପରି ଲୋକପ୍ରିୟ, ମୁଁ ଭାବୁଛି, ଇରୋପର କୌଣସି କବି ବୋଧହୁଏ ସେଠାରେ ଏତେ ଲୋକପ୍ରିୟ ନୁହଁନ୍ତି ।

ରବୀନ୍ଦ୍ରନାଥ, କବିତାରେ ଯେପରି ଅପ୍ରତିଦ୍ୱନ୍ଦ୍ୱୀ, ସଙ୍ଗୀତରେ ମଧ୍ୟ ସେପରି ଅତୁଳନୀୟ । ରବୀନ୍ଦ୍ର ସଙ୍ଗୀତ ବଙ୍ଗବାସୀଙ୍କର ଅତ୍ୟନ୍ତ ପ୍ରିୟ ଓ ସେମାନେ ଯେଉଁଠାରେ ଥାଆନ୍ତୁନା କାହିଁକି, ତାହା ସେମାନଙ୍କର ପରମ ସାଥୀ । ପଶ୍ଚିମ ଭାରତରୁ ଆରମ୍ଭ କରି ବର୍ମା ପର୍ଯ୍ୟନ୍ତ ପ୍ରାୟ ସମସ୍ତେ ଏହା ଗାନ କରନ୍ତି । ୧୯ବର୍ଷ ବୟସରେ ସେ ତାଙ୍କର ପ୍ରଥମ ଉପନ୍ୟାସ ପାଇଁ ଖ୍ୟାତିଅର୍ଜନ କରିଥିଲେ । ଟିକିଏ ବଡ଼ ହେବାପରେ ସେ ନାଟକ ରଚନା ଆରମ୍ଭ କଲେ । ଯାହା ସେଇ ଦୀର୍ଘ ଅତୀତରୁ ଏ ପର୍ଯ୍ୟନ୍ତ କଲିକତାର ରଙ୍ଗମଞ୍ଚରେ ଅଭିନିତ ହେଉଛି । ମୁଁ ତାଙ୍କ ଜୀବନର ପରିପୂର୍ଣ୍ଣତାକୁ ପ୍ରଶଂସା କରେ ।"

**ତାଙ୍କ ପିଲା ସମୟର କଥା**

ସେ ଉଦ୍ୟାନରେ ବସି ପ୍ରକୃତିର ବର୍ଣ୍ଣାଢ୍ୟ ପରିବେଶକୁ ଉପଭୋଗ କରନ୍ତି । ପ୍ରକୃତିଲୁବ୍ଧ କିଶୋରକବି ରବୀନ୍ଦ୍ରନାଥ ତାଙ୍କ ଲେଖନୀରେ ବହୁଦୃଶ୍ୟକୁ ତୋଳିନେଇ ଜୀବନ୍ତ କରିଛନ୍ତି । କବିଙ୍କ ଜୀବନର ମଧ୍ୟାହ୍ନ ସମୟଟା ଥିଲା ସବୁଠାରୁ ବେଦନାଦାୟକ । ୨୫ ବର୍ଷରୁ ୩୫ ବର୍ଷ ମଧ୍ୟରେ ସେ ଦାରୁଣ ଦୁର୍ବିପାକର ସମ୍ମୁଖୀନ ହୋଇଥିଲେ । ସେଇ ବେଦନାବିଧୁର ଜୀବନକୁ ପାଥେୟ କରି ବଙ୍ଗଭାଷାରେ ସର୍ବୋତ୍ତମ ରସୋତ୍ତୀର୍ଣ୍ଣ ପ୍ରଣୟ ସଙ୍ଗୀତ ସେ ରଚନା କରିଛନ୍ତି ।

ଡାକ୍ତର ବନ୍ଧୁଙ୍କର ଭାବବିଦଗ୍‌ଧତା ମୋତେ ଗଭୀର ଭାବରେ ସ୍ପର୍ଶକଲା । ସେ ପୁଣି କହିଲେ, "ମୁଁ ଯେତେବେଳେ ଥିଲି, ସତର ବର୍ଷ ବୟସର ଏକ ନବ ଯୁବକ । କବିଙ୍କର ସେଇ ରସସିକ୍ତ ଅନିର୍ବଚନୀୟ କବିତାଗୁଡ଼ିକ ମୋର ମନ ଓ ହୃଦୟକୁ ଏକାନ୍ତ ଭାବରେ ପ୍ଲାବିତ କରିଥିଲା । ମୁଁ ଏ ଦିଗରେ ତାଙ୍କ ପାଖରେ ଏତେ ଋଣୀ ଯେ କୃତଜ୍ଞତା ପ୍ରକାଶ କରିବାକୁ ମୋ ପାଖରେ ଭାଷା ନାହିଁ । ତା' ପରେ ତାଙ୍କର ପ୍ରଣୟ ସଙ୍ଗୀତଗୁଡ଼ିକ ଦାର୍ଶନିକ ଦୃଷ୍ଟିଭଙ୍ଗୀ ଏବଂ ଆଧ୍ୟାତ୍ମିକ ଭାବଧାରାରେ ପରିପୁଷ୍ଟ ହେଲା । ମାନବ ଜୀବନର ଅସରନ୍ତି ଆଶା ଆକାଙ୍‌କ୍ଷା, ଓ ସମର୍ପଣଭାବ, କବିତାଗୁଡ଼ିକରେ ପ୍ରତିଫଳିତ ହେଲା ।"

ସେହି ଚିକିତ୍ସକ ମହାଶୟ ଭାବଗଦ୍‌ ଗଦ୍‌ ହୋଇ ପୁଣି କହିଲେ, "ଆମ ମୁନି ସମାଜ ଓ ସାଧୁସନ୍ଥମାନଙ୍କ ମଧ୍ୟରେ ସେ ହେଉଛନ୍ତି ଏକମାତ୍ର ବ୍ୟକ୍ତି, ଯେକି ଜୀବନ ପ୍ରତି ବିତୃଷ୍ଣାଭାବ ପ୍ରକାଶ କରି ନାହାଁନ୍ତି ଏବଂ ଲେଖାର ପ୍ରତ୍ୟେକ ଛତ୍ରରେ ଜୀବନର ଜୟଗାନ କରିଛନ୍ତି । ସେଇଥିପାଇଁ ଆମେ ତାଙ୍କୁ ଏତେ ଆଦର ଓ ସମ୍ମାନ ପ୍ରଦର୍ଶନ କରୁ ।

ସେ ମହାଶୟ ଗଭୀର ଭାବାବେଗ ମଧ୍ୟରେ ଏସବୁ କହିଲାବେଳେ ଯେଉଁ ସୁନ୍ଦର ମଧୁର ଶବ୍ଦ ପ୍ରୟୋଗ କରୁଥିଲେ, ମୁଁ କହିଲାବେଳେ ହୁଏତ ତାର ବ୍ୟତିକ୍ରମ ସୃଷ୍ଟି ହେଉଥିବ କିନ୍ତୁ ମୁଁ ତାଙ୍କ ଭାବକୁ ଅକ୍ଷୁଣ୍ଣ ରଖିବାକୁ ଚେଷ୍ଟା କରିଛି ।

"ଅଳ୍ପ ସମୟ ପୂର୍ବରୁ ସେ ଆମ ଚର୍ଚ୍ଚ (ବହ୍ମମନ୍ଦିର)ରେ ଆଧ୍ୟାତ୍ମିକ ଅଭିଭାଷଣ ଦେଇଥିଲେ । ଆମେ ବ୍ରାହ୍ମ ସମାଜ ବାଲା ଆମ ବ୍ରହ୍ମ ମନ୍ଦିରକୁ ଇଂରାଜିରେ ଚର୍ଚ୍ଚବୋଲି କହୁ । କଲିକତାରେ ଏହା ଥିଲା ସବୁ ଠାରୁ ବଡ଼ । ଏଠାରେ ଏପରି ଜନସମାଗମ ହୋଇଥିଲା ଯେ, ରାସ୍ତା ପାର ହେବା ଆଦୌ ସମ୍ଭବ ନଥିଲା । ଏପରିକି ଲୋକମାନେ ଜାଗା ନ ପାଇ ଝରକା ପାଖରେ ଛିଡ଼ା ହୋଇଥିଲେ ।" ରବୀନ୍ଦ୍ରନାଥଙ୍କ ଉପରେ ଏହାଥିଲା ତାଙ୍କର ଆବେଗଭରା ଅଭିବ୍ୟକ୍ତି ।

ଅନ୍ୟ ଭାରତୀୟମାନେ ମୋ ପାଖକୁ ମଧ୍ୟ ଆସନ୍ତି । ମୋର ସେମାନଙ୍କ ସହିତ ଅନ୍ତରଙ୍ଗ ଆଳାପ ଆଲୋଚନାବି ହୁଏ । ସେମାନେ ରବୀନ୍ଦ୍ରନାଥ ଠାକୁରଙ୍କୁ ଯେପରି ସ୍ନେହ, ଶ୍ରଦ୍ଧା, ସମ୍ମାନ ଦିଅନ୍ତି ତାହା ମୋତେ ବିସ୍ମିତ କରେ । ଏପ୍ରକାର

ପ୍ରତିଭାପୂଜା ଆମ ପାଶ୍ଚାତ୍ୟ ସମାଜ ପାଇଁ ସମ୍ପୂର୍ଣ୍ଣ ଅପ୍ରତ୍ୟାଶିତ, କାରଣ ଆମେ ବଡ଼ ସାନ ସମସ୍ତଙ୍କୁ ଗୋଟିଏ ତଉଲରେ ତଉଲୁ ଏବଂ ଅର୍ଦ୍ଧ ଗୁରୁତ୍ୱ ସୂଚକ ମାମୁଲି ଆବରଣ ତଳେ ଘୋଡ଼ାଇ ରଖୁ। ଆମେ ତ ବହୁତ ଚର୍ଚ୍ଚ ଗଡିଛୁ କିନ୍ତୁ ଆମର ମହାନ ବ୍ୟକ୍ତିମାନଙ୍କ ପ୍ରତି ଯେତିକି ଶ୍ରଦ୍ଧା ଓ ସମ୍ମାନ ରଖିବା କଥା ତାହା ରଖିପାରିଛୁ କି ?

ଜଣେ ଭାରତୀୟ ବଂଧୁ ମୋତେ କହିଲେ; ମୁଁ ପ୍ରତିଦିନ ରାତି ୩ଟାରେ ଦେଖିଛି, ରବୀନ୍ଦ୍ର ନାଥ ନିଶ୍ଚଳ ଧ୍ୟାନରେ ବସିଥାନ୍ତି। ପ୍ରାୟ ଦୁଇ ଘଣ୍ଟା ପର୍ଯ୍ୟନ୍ତ ପ୍ରାକୃତିକ ପରିବେଶ ମଧ୍ୟରେ ମଗ୍ନ ହୋଇ ଧ୍ୟାନରୁ ଉଠନ୍ତି ନାହିଁ। ତାଙ୍କ ପିତା, ମହର୍ଷି ପ୍ରକୃତି କୋଳରେ ସାରାଦିନ ଧ୍ୟାନ ବିଭୋର ହୋଇ ବସିଥାନ୍ତି। ବେଳେବେଳେ ରାତି ପାହିଯାଏ। ଥରେ ଗୋଟିଏ ନଦୀର ଦୃଶ୍ୟରେ ବିଭୋର ହୋଇ କୂଳରେ ଧ୍ୟାନସ୍ଥ ହୋଇ ବସିଗଲେ ଯେ ଆଉ ଉଠିଲେ ନାହିଁ। ନାଉରିଆମାନଙ୍କୁ ପ୍ରାୟ ଦୀର୍ଘ ଆଠଘଣ୍ଟା ଅପେକ୍ଷା କରିବାକୁ ପଡ଼ିଲା। ସେ ଉଠିବା ପରେ ପୁଣିଥରେ ନୌଯାତ୍ରା ଆରମ୍ଭ ହେଲା।

ଚିକିତ୍ସକ ମହାଶୟ ଭାବ ପ୍ରବଣ ହୋଇ କହି ଚାଲିଥାନ୍ତି। ତା'ପରେ ସେ କହିଲେ, 'ରବୀନ୍ଦ୍ରନାଥ ଠାକୁରଙ୍କ ବଂଶପରଂପରାର ଏକ ଐତିହ୍ୟ ସମ୍ପନ୍ନ ଅଭିଜାତ ଧାରା ଅବ୍ୟାହତ ରହିଛି। ବର୍ତ୍ତମାନ ତାଙ୍କ ପରିବାରରେ ଅଛନ୍ତି ଗଗନେନ୍ଦ୍ର ନାଥ ଠାକୁର, ଅବନୀନ୍ଦ୍ର ନାଥ ଠାକୁର, ଯେଉଁମାନେ, ଜଣେ ଜଣେ ମହାନ୍ ଚିତ୍ର ଶିଳ୍ପୀ। ରବୀନ୍ଦ୍ରନାଥଙ୍କ ଭାଇ ଦ୍ୱିଜେନ୍ଦ୍ରନାଥ ଠାକୁର ଜଣେ ମହାନ୍ ଦାର୍ଶନିକ। ଦିନେ ଦିନେ ସେ ଏପରି ନିଶ୍ଚଳ ହୋଇ ବସି ରହନ୍ତି ଯେ, ଗଛ ଡାଳରୁ ଗୁଣ୍ଡୁଚି ମୂଷାମାନେ ଆସି ତାଙ୍କ କୋଳରେ ଡେଇଁବୁଲନ୍ତି। ପକ୍ଷୀମାନେ ଗଛ ଡାଳରୁ ଓହ୍ଲାଇଆସି ତା'ଙ୍କ କାନ୍ଧରେ ବସନ୍ତି, ତଥାପି ସେ ନିର୍ବିକଳ୍ପ। ଏହି ମହାନ୍ ବ୍ୟକ୍ତିମାନଙ୍କ ଅନୁଚିନ୍ତନ ମଧ୍ୟରେ ମୁଁ ଅନ୍ତର୍ନିହିତ ସୌନ୍ଦର୍ଯ୍ୟକୁ ପ୍ରତ୍ୟକ୍ଷ କରେ ଓ ତା'ର ଅର୍ଥକୁ ଅବବୋଧ କରିଥାଏ । ଏତିକି ବେଳେ ମୋର ମନେ ପଡ଼େ, 'ନିଏଣ୍ଟ'ଙ୍କ ଦାର୍ଶନିକ ମତବାଦ କଥା। ତାଙ୍କ ମତରେ, 'କୌଣସି ନୈତିକ, ପ୍ରାଜ୍ଞିକ ଓ ବୌଦ୍ଧିକ ସୌନ୍ଦର୍ଯ୍ୟ ଯଦି ପାର୍ଥିବତାକୁ ପ୍ରଭାବିତ କରି ନପାରିଲା, ତା'ହେଲେ ତା'ର ମୂଲ୍ୟ କିଛି ନାହିଁ ।'

ମୁଁ ତା'ପରେ ତାଙ୍କୁ କହିଲି, "ଆପଣଙ୍କର ଏଇ ପ୍ରାଚ୍ୟ ସଂସ୍କୃତିର ବିଶେଷତ୍ୱ ହେଉଛି, ଆପଣମାନେ ନିଜ ପରିବାରର ଉଜ୍ଜ୍ୱଳ ଭାବମୂର୍ତ୍ତି ରକ୍ଷା କରିବା ପାଇଁ, ସର୍ବଦା ଯତ୍ନବାନ ଓ ତତ୍ପର । ଦିନକର ଘଟଣା, ମୁଁ ଏକ ସଂଗ୍ରହାଳୟକୁ ଦେଖିବା ପାଇଁ ଯାଇଥାଏ । ଜଣେ ବ୍ୟକ୍ତି ଯେକି ସାମାନ୍ୟ କୃଷ୍ଣକାୟ, ଗୋଟିଏ ଚିତ୍ରକୁ ଯତ୍ନର ସହିତ ସଜାଇ ରଖୁଥାଏ । ସଂଗ୍ରହାଳୟର ଅଧ୍ୟକ୍ଷ ସେଇ ଲୋକଟିକୁ ଲକ୍ଷ୍ୟ କରି ମୋତେ କହିଲେ, 'ଲୋକଟି ହେଉଛି ମିକାଡୋ'ଙ୍କ ବଂଶାନୁକ୍ରମିକ ଚିତ୍ର ରକ୍ଷକ। ଏବଂ ତାଙ୍କ ବଂଶର ଚତୁଃର୍ଦ୍ଦଶ ବ୍ୟକ୍ତି, ଯେକି ଏହି ପଦବୀରେ ରହିଆସିଛି ।

ସେ ମହାଶୟ କହିଲେ, 'ରବୀନ୍ଦ୍ର ନାଥ ଯେତେବେଳେ ଛୋଟ ପିଲାଥିଲେ, ସେତେବେଳେ ମଧ୍ୟ ତାଙ୍କ ଘର, ସାହିତ୍ୟ, ସଙ୍ଗୀତ ଓ କଳାରେ ଭରପୂର ଥିଲା। ସେ ସେଇ ବଂଶାନୁକ୍ରମିକ ପରଂପରାରେ ଗଢ଼ା ।

ମୁଁ ତା'ପରେ ତାଙ୍କୁ ପଚାରିଲି, "ଆମ ଦେଶପରି, ଆପଣଙ୍କ ଦେଶରେ ପ୍ରଚାର ଧର୍ମୀ ଲେଖା ଓ ସମାଲୋଚନାତ୍ମକ ସାହିତ୍ୟ ଅଛିକି ନାହିଁ ? ଆମ ଦେଶରେ ଏହାର ମାତ୍ରା ଏତେ ଅଧିକ ଯେ, ଆମର ସାରସ୍ୱତ ମନନ ଧର୍ମୀ ସୃଜନଶୀଳ ସାହିତ୍ୟ ସୃଷ୍ଟି ହୋଇ ପାରୁନାହିଁ । ତେବେ ଏହି ପ୍ରବାହକୁ ବନ୍ଦ କରାଯିବା ସମ୍ଭବ ନୁହେଁ । ଆମ ଜୀବନ କ୍ରମାଗତ ସଂଘର୍ଷମୟ ହୋଇନଥିଲେ ଆମର ସ୍ୱତନ୍ତ୍ର ରୁଚିବୋଲି କିଛି ନଥାନ୍ତା। ଭଲ ମନ୍ଦର ଧାରଣା ମଧ୍ୟ ସୃଷ୍ଟି ହୋଇନଥାନ୍ତା। ଆମେ ଶ୍ରୋତା ଓ ପାଠକ ମଧ୍ୟ ହୋଇପାରି ନଥାନ୍ତୁ । ଆମର ପ୍ରଭୂତ ଶକ୍ତି ମଧ୍ୟ ଅତି ତୁଚ୍ଛ କଳହ ଓ ସଂଘର୍ଷ ମଧ୍ୟରେ ବ୍ୟୟିତ ହେଉଥାନ୍ତା ।"

ସେ ମହାଶୟ କହିଲେ, "ନା ନା ଆମର ମଧ୍ୟ ସେପରି ପ୍ରଚାରଧର୍ମୀ ସାହିତ୍ୟ ଅଛି। ବିଶେଷତଃ ପୌରାଣିକ ସାହିତ୍ୟ ଗୁଡ଼ିକ ଏହାର ଅନ୍ତର୍ଗତ । ଗାଁର ଲୋକମାନେ ଏହାଦ୍ୱାରା ଅଧିକ ପ୍ରଭାବିତ ଓ ସେମାନେ ଏଥିରୁ ଦୀର୍ଘ ଆଧ୍ୟାତ୍ମିକ ସଙ୍ଗୀତ ମଧ୍ୟ ଆବୃତ୍ତି କରନ୍ତି । ଅନେକ ଉଦ୍ଧରଣ ମଧ୍ୟଯୁଗୀୟ ସଂସ୍କୃତରୁ ମଧ୍ୟ ଅଣାଯାଇଥାଏ। ଏସବୁ ଅତ୍ୟନ୍ତ ପ୍ରଭାବଶାଳୀ ଏବଂ କର୍ତ୍ତବ୍ୟ ସଚେତନ ହେବା ପାଇଁ ଏହା ଅମାପ ପ୍ରେରଣା ଯୋଗାଏ।

ମୁଁ ରବୀନ୍ଦ୍ରନାଥଙ୍କର ସେଇ ଇଂରାଜି ଗଦ୍ୟାନୁବାଦ ପାଣ୍ଡୁଲିପିଟି ସାଥିରେ ନେଇ ବୁଲୁଛି । ଟ୍ରେନ, ହୋଟେଲ, ଯେଉଁଠାରେ ସୁବିଧା ମିଳେ ସେଠାରେ ମନ ଧ୍ୟାନ ଦେଇ ପଢ଼େ। ମୋର ମଗ୍ନତାର ସୂଚନା ଅନ୍ୟମାନଙ୍କୁ ଦିଏନାହିଁ। କେହି ନିରୀକ୍ଷଣ କରୁଥିବା ଜାଣିଲେ ବହି ବନ୍ଦ କରିଦିଏ ।

ଏହି ମୌଳିକ କବିତା ଗୁଡ଼ିକ ବିଷୟରେ ମୋର ଭାରତୀୟ ବନ୍ଧୁମାନେ କହନ୍ତି, ଏହି ଗୀତିକବିତା ଗୁଡ଼ିକରେ ଧ୍ୱନିର ପରିପୂର୍ଣ୍ଣତା, ସୌନ୍ଦର୍ଯ୍ୟର ଅନିର୍ବଚନୀୟତା ଏବଂ କୋମଳତା, ଏବଂ ଛନ୍ଦବନ୍ଧର ନୂତନ ଦିଗନ୍ତ ସୃଷ୍ଟି ହୋଇଛି। ଏହି କବିତାଗୁଡ଼ିକରେ ଯେଉଁ ଭାବମୟ ପୃଥିବୀର ଚିତ୍ର ଅଙ୍କିତ ହୋଇଛି, ତାହାହିଁ ଥିଲା ମୋ ଜୀବନର ସ୍ୱପ୍ନ । ମୁଁ ସେଇପରି ଏକ ପୃଥିବୀର ସ୍ୱପ୍ନ ଜୀବନ ସାରା ଦେଖିଆସିଛି । ଏହି ଲେଖାଟି ଏକ ମହାନ୍ ସଂସ୍କୃତିର ସର୍ବୋତ୍ତମ କୃତି । ତଥାପି ତାଙ୍କ ଲେଖା, ମୃତ୍ତିକା, ଘାସ ଓ ତୃଣର କ୍ରମବିକାଶର ଚିତ୍ରପରି ପ୍ରତୀୟମାନ ହୁଏ ।

ଏହା ଏପରି ଏକ ସଂସ୍କୃତି, ଯାହା ମଧ୍ୟରେ ଶତାବ୍ଦୀ ଶତାବ୍ଦୀ ଧରି, କବିତା ଓ ଧର୍ମର ବିପୁଳ ସମରୂପତା ପ୍ରକାଶିତ ହୋଇଛି । ଏହା ଶିକ୍ଷିତ ଅଶିକ୍ଷିତ ସମସ୍ତଙ୍କ ମଧ୍ୟରେ ଆଳଙ୍କାରିକଭାବ ଓ ଆବେଗକୁ ମିଶ୍ରଣ କରି ପ୍ରକାଶିତ ହୋଇଛି ଏବଂ ପରେପରେ ବିଦ୍ୱାନ୍ ଏବଂ ମହାନ୍ ବ୍ୟକ୍ତିମାନଙ୍କର ଚିନ୍ତାଧାରାକୁ ଅଗଣିତ ଜନ ଜୀବନକୁ ଫେରାଇ ଆଣିଛି।

ଯଦି ବଙ୍ଗ ସଭ୍ୟତା ଅତୁଟ ରହେ, ଯଦି ସର୍ବଶକ୍ତିମାନ ସେଇ ଆଧ୍ୟାତ୍ମିକ ସତ୍ତା ସର୍ବ ସାଧାରଣଙ୍କ ମନରେ ପ୍ରବାହିତ ହୁଏ ଏବଂ ଆଜିର ଜନ ମାନସପରି ଖଣ୍ଡିତ ନହୁଏ, ତା'ହେଲେ ଏହି ଗୀତିକବିତାଗୁଡ଼ିକର ଧ୍ୱନିମୟ ଛନ୍ଦ ବଂଶାନୁକ୍ରମରେ ଦାଣ୍ଡ ବାଟର ବାଟୋଇ କଣ୍ଠକୁ ମଧ୍ୟ ଓହ୍ଲାଇ ଆସିବ ।

ଯେତେବେଳେ ଇଂଲଣ୍ଡରେ ସମସ୍ତଙ୍କର ସମାନ ଚିନ୍ତାଧାରା ଥିଲା, ସେତେବେଳେ 'ଚୌସର' ତାଙ୍କର 'ଟ୍ରଏଲସ୍ ଏବଂ କ୍ରେସିଡା' ପୁସ୍ତକଟିକୁ ସମସ୍ତେ ପଢ଼ିବେ ବୋଲି ଲେଖିଥିଲେ। ସମୟକ୍ରମେ ତାଙ୍କ ଲେଖା ଏପରି ଲୋକପ୍ରିୟତା

ଅର୍ଜନ କଲାଯେ, ଚାରଣ ଓ ଭାଟମାନେ ଏହା ଆବୃତ୍ତିକଲେ । ରବୀନ୍ଦ୍ର ନାଥ ଠାକୁର ଚୌରସଙ୍କପରି ଗୀତିମୟ କବିତା ରଚନା କରିଛନ୍ତି । ଏହାକୁ ପ୍ରତ୍ୟେକ ପ୍ରତିମୂହୂର୍ତ୍ତରେ ବୁଝନ୍ତି । ତାଙ୍କ ଲେଖା ଯେପରି ବିପୁଳ, ସେପରି ସ୍ୱତଃସ୍ଫୁର୍ତ୍ତ ଏବଂ ଭାବମୟ ପରିପ୍ରକାଶ । ଏହା ବିବିଧ ବିସ୍ମୟତାରେ ପରିପୂର୍ଣ୍ଣ । ରବୀନ୍ଦ୍ର ନାଥ ଏପରି ଏକ କୃତିର ଅଧିକାରୀ ଯାହା ଅସାଧାରଣ ।

ଗୀତାଞ୍ଜଳିର କବିତାଗୁଡ଼ିକ କୌଣସି ଆବଶ୍ୟକତା କିମ୍ବା ଆତ୍ମରକ୍ଷାର ମନୋବୃତ୍ତି ନେଇ ଲେଖା ଯାଇନାହିଁ । ଏହା ଏପରି ଏକ ପୁସ୍ତକ ନୁହେଁ ଯାହା ସୁମୁଦ୍ରିତ ସୁଦୃଶ୍ୟ ପୁସ୍ତକ ପରି ନାରୀମାନଙ୍କ ଟେବୁଲ ଉପରେ ପଡ଼ି ରହିବ ଏବଂ ସେମାନେ ଖିଆଲି ଢ଼ଙ୍ଗରେ ଅଳସ ହାତରେ ତାର ପୃଷ୍ଠା ଗୁଡ଼ିକ ଲେଉଟାଇବେ । ଏହା ସେମାନଙ୍କର ଜୀବନ ଜିଜ୍ଞାସାର ଏକ ପୁସ୍ତକ ବୋଲି ଗ୍ରହଣ କରିବାକୁ ହେବ ।

ଏହାମଧ୍ୟ ଏପରି ଏକ ପୁସ୍ତକ ନୁହେଁ, ଯାହାକୁ ପିଲାମାନେ ବିଶ୍ୱବିଦ୍ୟାଳୟକୁ ନେଇ, କାମ ଆରମ୍ଭ ବେଳେ ଆଡେଇ ଦେଇ ପୁଣି ରଖିଦେବେ । ମନେରଖିବାକୁ ହେବ, ଏପରି ସମୟ ଆସିବ, ବଂଶାନୁକ୍ରମରେ ଏହାକୁ ଆବୃତ୍ତି କରି ରାସ୍ତାର ପଥିକ କଣ୍ଠକୁ ଏହା ଓହ୍ଲାଇ ଆସିବ । ନାଉରିଆମାନେ ନାଆ ବାହିଲା ବେଳେ, ପ୍ରେମିକ ପ୍ରେମିକାମାନେ ଶୃଙ୍ଗାର ପ୍ରତୀକ୍ଷାରେ ଥିବା ବେଳେ, କଣ୍ଠ ଚହଲାଇ ଏହାକୁ ଆବୃତ୍ତି କରିବେ । ଆଧ୍ୟାତ୍ମିକ ରସରେ ମନକୁ ଥରେ ମାଜି ଦେଲେ, ତିକ୍ତ ଲାଳସା ଦୂରେଇ ଯିବ ଏବଂ କାମନା ପୀଡ଼ିତ ମନ ନବ ଜାଗରଣେ ଉଦ୍‌ବୁଦ୍ଧ ହେବ ।

ମୁଁ ଯେତେଥର ଏହି କବିତାଗୁଡ଼ିକୁ ପଢ଼ିଛି ସେତେ ବିହ୍ୱଳ ହୋଇଛି ଏବଂ ମୋର ମନ ବହିର୍ମୁଖୀ ହୋଇ ଆନନ୍ଦରେ ସେଇ ଅନନ୍ତ ମହାସତ୍ତା ଆଡ଼କୁ ଧାବିତ ହୋଇଛି । ରବୀନ୍ଦ୍ରନାଥଙ୍କ କବିତାରେ ସାର୍ବଜନୀନ ମାନବ ଜୀବନର ସାମ୍ପ୍ରତିକ ପରିବେଶ ଭରି ରହିଛି । ତେଣୁ ତାହା ସର୍ବଜନଗ୍ରାହ୍ୟ । ସାର୍ବକାଳିକ ।

ଧୂଳି ଦାଗ ଲଗା, ଲାଲ ବାଦାମୀ ରଙ୍ଗର ପୋଷାକ ପିନ୍ଧିଥିବା ପଥିକର ଦାଗକୁ ଖୋଜି ଛଡ଼ାଇବାର ନିଷ୍ଠା, ପ୍ରଣୟ ଶଯ୍ୟାରେ ଖସି ପଡ଼ିଥିବା ପ୍ରଣୟୀ କଣ୍ଠହାର ପୁଷ୍ପକୁ ପ୍ରଣୟିନୀ ଖୋଜିବାର ଉତ୍କଣ୍ଠା ଏବଂ ସ୍ୱାମୀର ଲେଉଟାଣି ବାଟକୁ

ବ୍ୟାକୁଳିତ ହୋଇ ଚାହିଁ ରହିଥିବା ସ୍ଥିର ଆବେଗ, ଈଶ୍ୱରାଭିମୁଖୀ ମନର ଏକ ପ୍ରତୀକ । ସେହିପରି ପୁଷ୍ପଗୁଚ୍ଛ, ନଦୀ, ଶଙ୍ଖଧ୍ୱନି, ଶ୍ରାବଣର ବାରିଧାରା, ରୁଦ୍ର ବୈଶାଖର ଗ୍ରୀଷ୍ମଦାହ ପ୍ରଭୃତି, ମିଳନ ବିଚ୍ଛେଦ ବିବଶ ମନର ବିଭିନ୍ନ ଅବସ୍ଥାର ପ୍ରତିଛବି ।

ନୌକାରେ ବସି ତନ୍ମୟ ବିଭୋର ହୋଇ ବଂଶୀ ବାଦନ କରୁଥିବା ଲୋକଟିର ବଂଶୀ ଧ୍ୱନି ଯେପରି ରୋମାଞ୍ଚକର ସେପରି ରହସ୍ୟମୟ ମଧ୍ୟ । ରହସ୍ୟମୟ ଠିକ୍ ଚାଇନା ଭାଷାର ଚିତ୍ରଲିପି ପରି । ଏହା ଐଶ୍ୱରିକ ରହସ୍ୟମୟତାର ଏକ ପ୍ରତୀକ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଏ ବିଶ୍ୱର ସମଗ୍ର ମାନବ ଜାତି ଏବଂ ମାନବ ସମାଜ ଓ ସଭ୍ୟତା ବିସ୍ମୟ କର, ଯାହା ଆମର କଳ୍ପନାରେ ପ୍ରତିଭାତ ହୁଏ । ଏହାର ଅଜ୍ଞାତ ରହସ୍ୟ ପାଇଁ ଆମେ ଯେତେ ବିସ୍ମିତ ନୋହୁ, ନିଜର ପ୍ରତିଛବିକୁ ତା ମଧ୍ୟରେ ଦେଖୁବୋଲି ଅଧିକ ବିସ୍ମୟ ବିଭୋର ହୋଇଥାଉ । ଅପରିଚିତ ମଧ୍ୟରେ ନିଜକୁ ଆବିଷ୍କାର କରିବାର ଚମକ କମ୍ ବିସ୍ମୟକର ନୁହେଁ ।ସେତେବେଳେ ମନେହୁଏ, ଆମେ 'ରସେଟି'ଙ୍କ ବନ ଉଦ୍ୟାନରେ ବିଚରଣ କରୁଛୁ କିମ୍ବା ପ୍ରଥମଥର ପାଇଁ ସାହିତ୍ୟରେ ଆମର ସ୍ୱରକୁ ସ୍ୱପ୍ନ ଭିତରେ ଶୁଣୁଛୁ ।

ନବ ଜାଗରଣ ପରେ ପରେ, ଇଉରୋପୀୟ ସାହିତ୍ୟର ମହାନ ଲେଖକମାନଙ୍କର ଲୋକପ୍ରିୟ ଚିନ୍ତାଧାରା ଛନ୍ଦ ଏବଂ ରଚନାଶୈଳୀ ବିଶେଷ ଭାବରେ ଜନମନକୁ ପ୍ରଭାବିତ କରିପାରିନାହିଁ ।

ଆମେ ଜାଣୁ ଦିନେନା ଦିନେ ଆମ ସମସ୍ତଙ୍କୁ ଏ ସଂସାର ତ୍ୟାଗ କରିବାକୁ ପଡ଼ିବ, ଆମେ ମଧ୍ୟ ସମସ୍ତେ ସଂସାରର ସୁଖଦ ଓ ଦୁଃଖଦ ପରିସ୍ଥିତି ସହିତ ଓତପ୍ରୋତଭାବରେ ଜଡ଼ିତ । ଏହାବୋଲି ସ୍ୱ ଇଚ୍ଛାରେ ସଂସାରକୁ ତ୍ୟାଗ କରିବାକୁ ଆମେ କଣ ଚିନ୍ତାକରିବା ସମ୍ଭବ ?

ଆମେ ଏତେ କବିତା ପଢ଼ିଛୁ, ଏତେ ସୌନ୍ଦର୍ଯ୍ୟ ଉପଭୋଗ କରିଛୁ, ଏତେ ମନଛୁଆଁ ଚିତ୍ର ଦେଖିଛୁ ଏବଂ ଏତେ ସଙ୍ଗୀତର ମାଧୁର୍ଯ୍ୟ ପାନ କରୁଛୁ - ଯେଉଁଠାରେ ଶରୀର ଓ ହୃଦୟର କ୍ରନ୍ଦନ ଏକ ହୋଇ ଯାଇଛି । ଏହି ପରିସ୍ଥିତରେ ଆମେ ନିର୍ମମଭାବରେ ସବୁ କ'ଣ ପରିତ୍ୟାଗ କରିପାରିବା ?

ସେଣ୍ଟ ବର୍ଣ୍ଣାଡ଼ଣ, ସୁଇଜରଲ୍ୟାଣ୍ଡର ରମଣୀୟ ହ୍ରଦ ଗୁଡ଼ିକର ସୌନ୍ଦର୍ଯ୍ୟ ଦେଖି କାଳେ ମୋହ ଗ୍ରସ୍ତ ହୋଇଯିବେ, ସେଥିପାଇଁ ତାହା ଦୃଷ୍ଟିରେ ନ ପଡ଼ିବାକୁ ସେ କ'ଣ ଆଖିରେ ଅନ୍ଧପୁଟୁଳି ଭିଡ଼ି ଦେଇଥିଲେ ନା ବୁକ୍ ଅଫ୍ ରିଭୋଲ୍ୟୁସନର କ୍ଳିଷ୍ଟରୂପକ ଓ ଅଳଙ୍କରଣକୁ ସେ ପାଠ କରିନଥିଲେ ? ଆମେ ମଧ୍ୟ ଅନୁଧ୍ୟାନ କଲେ ରବୀନ୍ଦ୍ରନାଥ ଠାକୁରଙ୍କ ଏଇ ଲେଖାଗୁଡ଼ିକ ମଧ୍ୟରେ ସୌଜନ୍ୟସମ୍ପନ୍ନ ବିପୁଳ ଶବ୍ଦ ସମ୍ଭାର ଦେଖିବାକୁ ପାଇବା । ଉଦାହରଣ ସ୍ୱରୂପ-

"ହେ ମୋର ବନ୍ଧୁ, ସକଳ ସଖା, ସାଥୀ !
ସଂସାର ଏ ଜଞ୍ଜାଳରୁ ମିଳିଲା ଏବେ ଛୁଟି ।
ହେ ଭାଇମାନେ ! ବିଦାୟ ଦଅ ମୋତେ,
ସମ୍ମାନ ମୁଁ ଜଣାଏ ସର୍ବେ
ବିଦାୟ ପ୍ରଣିପାତେ ।
ଦେଉଛି ନିଅ ମୋର ଏ ଚାବିମାଳ
ଅରପୁଅଛି ଘରର ସବୁ ଭାର,
ମାଗୁନି କିଛି, ଶେଷରେ ଖାଲି -
ଏତିକି ମୋର ଅଳି,
ତୁମର ସେଇ କୋମଳ ମଧୁ
ବଚନ ପଦେ ଖାଲି ।
ଜାଣିଛ ନିକି ଜୀବନସାରା ପଡ଼ୋଶୀ ଥିଲେ ଆମେ
ମୋ ଦେବାଠାରୁ ପାଇଛି ବେଶି ଦେଇଛ ସବୁ ତୁମେ ।
ପାହିଛି ରାତି, ପ୍ରଭାତ ହେଲା ଏବେ,
ଅନ୍ଧାର ଘର ଦୀପଟି ମୋର ନିଭେ,
ଅନ୍ତିମ ସେ ଡ଼ାକରା ଗଲା ମିଳି
ବାହୁଡ଼ା ଯାତ୍ରା ବାଢ଼ିବି ଏବେ ବୋଲି ।
(କବିତା - ୯୩)

ଏଇ ହେଉଛି ଆମ ଅନ୍ତିମ ମୁହୂର୍ତ୍ତର ମାନସିକ ଅବସ୍ଥାର ଚିତ୍ର ଏବଂ ସେ 'କାମ୍ପିସ୍ ଜନ୍ ଅଫ୍ କ୍ରସ'ଙ୍କୁ ଅତିକ୍ରମ କରି ଗାଇ ଉଠିଛନ୍ତି ।

" ମୁଁ ଯେହେତୁ ମୋ ଜୀବନକୁ ଭଲ ପାଏ
ମୁଁ ଜାଣେ, ମୁଁ ମୃତ୍ୟୁକୁ ମଧ୍ୟ ଭଲ ପାଇବି ।"

ରବୀନ୍ଦ୍ରନାଥଙ୍କର ଏହି ପୁସ୍ତକ, ମାନବର ବିରହ ବ୍ୟାକୁଳିତ ଜୀବନର ମାର୍ମିକ ଚିତ୍ର ବହନ କରିଛି । ଆମେ ପ୍ରକୃତରେ ଈଶ୍ୱରଙ୍କୁ ଯେ ପ୍ରେମ କରୁ ଏ ଧାରଣା ଆମ ସମସ୍ତଙ୍କର ନାହିଁ । ଅବଶ୍ୟ ତାଙ୍କ ପ୍ରତି ଆମର ବିଶ୍ୱାସ ଅତୁଟ ଅଛି । ଜୀବନର ଅତୀତ ଉପରେ ଦୃଷ୍ଟି ନିକ୍ଷେପ କଲେ ଆମେ ନୂତନ ପଥ ଆବିଷ୍କାର କରୁ । ବନ ପର୍ବତର ନିର୍ଜନ ପରିବେଶ ମଧ୍ୟରେ ଆମେ ଆମର ପ୍ରେମିକା ଉପରେ ଯେଉଁ ରହସ୍ୟମୟ ଅଧିକାର ସାବ୍ୟସ୍ତ କରୁ, ସେଥିରେ ଏକ କପଟ ମଧୁରତାର ଛଳନାମୟ ଆବେଗର ସୂଚନା ମିଳେ ।

"ସାଧାରଣ ଲୋକଟିଏ ପରି
ତୁମେ ଆସି ଅଯାଚିତ ଭାବେ
ମୋ ହୃଦୟେ କରିଲ ପ୍ରବେଶ
ଆଙ୍କି ଦେଲ ଅଜ୍ଞାତରେ
ମୁଦ୍ରା ଚିରନ୍ତନ,
ଏଇ ମୋର ଭଙ୍ଗୁର ଜୀବନ ।"

ରବୀନ୍ଦ୍ରନାଥଙ୍କ ଏଇ କବିତା ଗୁଡ଼ିକ ମଧ୍ୟରେ କେବଳ କ୍ଷୁଦ୍ର ଏକ ପ୍ରକୋଷ୍ଠର ପବିତ୍ରତା କିମ୍ବା କଷାଘାତର ଯନ୍ତ୍ରଣା ନାହିଁ । ଅଛି ଏକ ଉର୍ଦ୍ଧ୍ୱ ଚେତନାର ଉତ୍ତରଣ । ଧରା ଧୂଳି ଓ ଆକାଶର ସୂର୍ଯ୍ୟ କିରଣକୁ ଚିତ୍ରଣ କରୁଥିବା ଏକ ଶିଳ୍ପୀର ଭାବ ବିଦ୍‌ଗଧତା କେବଳ ଏହା ତା'ଠାରୁ ଉଚ୍ଚରେ ନାହିଁ । ଆମେ ଏଇ ଏକ ପ୍ରକାରର ସ୍ୱରଟିଏ, ସେଣ୍ଟ ଫ୍ରାନ୍‌ସିସ୍‌ଙ୍କଠାରୁ ଉଇଲିୟମ ବ୍ଲାକଙ୍କ ପର୍ଯ୍ୟନ୍ତ ଶୁଣିବାକୁ ପାଉ । ଯେଉଁମାନେ ଆମ ଗତିଶୀଳ ଇତିହାସର ଅପରିଚିତ ବ୍ୟକ୍ତିତ୍ୱ ପରି ଜଣା ଯାଆନ୍ତି । କିନ୍ତୁ ସେମାନେ ଅତ୍ୟନ୍ତ ଉର୍ଦ୍ଧ୍ୱଚେତନାର କବି ।

ଆମେ ଅନେକ ଲମ୍ବା ଲମ୍ବା ବହି ଲେଖୁ, ଯେଉଁଥିରେ କି ଲେଖାକୁ ଆନନ୍ଦ ଦାୟକ କଲାପରି ପୃଷ୍ଠାଟିଏ ବି ନଥାଏ । କୌଣସି ଏକ ସାଧାରଣ ପରିକଳ୍ପନାକୁ ଆଧାର କରି ଆମେ ଲେଖିଥାଉ । ତାକୁଇ ନେଇ ନାନା ସଂଘର୍ଷ କରି ଆମେ ଅର୍ଥ ଉପାର୍ଜନ କରୁ । ମନ ଅଳୀକ ରାଜନୀତିରେ ସର୍ବଦା ଭାରାକ୍ରାନ୍ତ ଥାଏ । ବହୁ ନିରାନନ୍ଦମୟ କାମ ଭିତରେ ଆମ ଜୀବନ ଅତିବାହିତ ହୋଇଥାଏ ।

ରବୀନ୍ଦ୍ରନାଥ ଠାକୁର ଭାରତୀୟ ସଭ୍ୟତାର ମୌଳିକତା ରକ୍ଷା କରି ଆତ୍ମାକୁ ଆବିଷ୍କାର କରିବା ମଧ୍ୟରେ ଗଭୀର ତୃପ୍ତି ଲାଭ କରିଛନ୍ତି । ସେ ସ୍ୱତଃସ୍ଫୂର୍ତ୍ତ ଭାବରେ ସେଠାରେ ନିଜକୁ ସର୍ପଣ କରିଛନ୍ତି । ତେବେ ଆଜିର ବାସ୍ତୁବାଦୀ ପ୍ରଭାବଶାଳୀ ଦୁନିଆର ଜୀବନ ସହିତ ତାଙ୍କ ଜୀବନର ଆଦର୍ଶଗତ ବିରୋଧାଭାସ ଦେଖିବାକୁ ମିଳେ । ସେ ନିଜକୁ ପାଲିସ୍ ନକରି, ନିଜର ଅନୁସୃତ ଧାରାକୁ ତାଙ୍କ ପାଇଁ ସର୍ବୋତ୍ତମ ବୋଲି ବିନୀତ ଭାବରେ ଗ୍ରହଣ କରି ନେଇଛନ୍ତି । ଏହାର ସୂଚନା ତାଙ୍କ ଲେଖା ମଧ୍ୟରେ ମିଳିଥାଏ ।

"ଘର ବାହୁଡ଼ା ସେ ଲୋକେ
    ମୋତେ ଚାହିଁ ଚାହିଁ,
ମୁଚ୍ ମୁଚ୍ ହସୁଥାନ୍ତି
    ଲଜ୍ଜାରେ ବୁଡ଼ାଇ ।
ଭିକାରୁଣୀ ଝିଅଟିଏ ପରି
ବସିଥାଏ ମୋ ମୁହଁକୁ
    କାନିରେ ଘୋଡ଼ାଇ ।
"ତୁ ଚାହୁଁଛୁ କିସ ?" ବୋଲି
    ପଚାରିଲେ ସିଏ,
ଚକ୍ଷୁନତ କରେ ମୁହିଁ
    ସେମାନଙ୍କୁ ଉତ୍ତର ନଦିଏ ।

ପୁଣି ଅନେକ ସମୟରେ ଅତୀତ ଜୀବନର ସ୍ମୃତିଚାରଣ କରି ସେ ଗାଇଛନ୍ତି:

ଜୀବନର ଅନେକ ମୁହୂର୍ତ୍ତ
ବିତିଅଛି ଭଲମନ୍ଦ ଦ୍ୱନ୍ଦ୍ୱ ସଂଘାତରେ ।
ଆଜି କିନ୍ତୁ, ଆହେ ମୋର କ୍ରୀଡ଼ାସାଥୀ
ଶୂନ୍ୟ ଜୀବନର,
ଟାଣୁଛନ୍ତି ମୋ ହୃଦୟ ତାଙ୍କ ଶ୍ରୀପୟରେ।
 ପାରୁନାହିଁ ବୁଝି,
ଅକସ୍ମାତ କାହିଁକି ଡାକରା
 ଏହି ଅପାତ୍ରରେ ଖୋଜି ।

ରବୀନ୍ଦ୍ର ସାହିତ୍ୟ ପରି ଏତେ ସରଳତା ଓ ଶାନ୍ତଚିତ୍ତତା ଅନ୍ୟ କୌଣସି ସାହିତ୍ୟରେ ଦେଖିବାକୁ ମିଳେ ନାହିଁ। ସରଳ ଶିଶୁମନର ପ୍ରିୟଭାବପରି ସବୁ ସମୟରେ ଆକାଶର ପକ୍ଷୀମାନେ ଓ ଗଛ ଲତାର ପତ୍ର ପୁଷ୍ପ ତାଙ୍କର ଅତି ଆପଣାର ପରି ମନେ ହୋଇଥାନ୍ତି । କିନ୍ତୁ ଆମମାନଙ୍କ ମନରେ ଋତୁ ପରିବର୍ତ୍ତନର ପ୍ରଭାବ ଏକ ବିଶେଷ ଘଟଣାପରି ନାନା ଭାବ ସୃଷ୍ଟି କରିଥାଏ ।

ସମୟେ ସମୟେ ମୁଁ ଭାବି ଆଶ୍ଚର୍ଯ୍ୟ ହୁଏ ଯେ ରବୀନ୍ଦ୍ରନାଥ ତାଙ୍କର ଏଇ ଅତି ଆପଣାର ଭାବକୁ ତାଙ୍କ ନିଜ ବଙ୍ଗଳା ସାହିତ୍ୟରୁ ପାଇଥିଲେ, ନା ଧର୍ମଶାସ୍ତ୍ର ମାନଙ୍କରୁ ତାଙ୍କୁ ଏ ଧାରଣା ମିଳିଥିଲା । ମୁଁ ଶୁଣିଛି, ବେଳେ ବେଳେ ତାଙ୍କ ଧ୍ୟାନମଗ୍ନ ଭାଇଙ୍କ କାନ୍ଧରେ ଆସି ପକ୍ଷୀମାନେ ନିର୍ଭୟରେ ବସୁଥିଲେ । ଏଥିରୁ ଅନୁମିତ ହୁଏ, ଏହି ପ୍ରିୟ ଭାବଟି ବୋଧହୁଏ, ତାଙ୍କର ବଂଶାନୁକ୍ରମିକ ଗୁଣ । ଆମେ ଏଇ ବଂଶାନୁକ୍ରମିକତା ତଥ୍ୟଟିକୁ ଜଣେ ଖ୍ରିଷ୍ଟାନ୍ କିମ୍ବା 'ପେଲାନୋର'ଙ୍କ ସୌଜନ୍ୟରୁ ପାଇଛୁ। ବଂଶାନୁକ୍ରମିତାର ରହସ୍ୟମୟ ସତ୍ତାଟି, ବଂଶଗତ ବିଶେଷ ଗୁଣ ବୋଲି ମନେହୁଏ ।

ଯେତେବେଳେ ରବୀନ୍ଦ୍ରନାଥ ଶିଶୁମାନଙ୍କ କଥା କହନ୍ତି, ସତେ ଯେପରି ପିଲାଟିଏ ତାଙ୍କ ଭିତରକୁ ଓହ୍ଲାଇ ଆସିଥିବା ପରି ମନେହୁଏ । ମୁନି ଋଷିମାନଙ୍କ

ବିଷୟରେ କହିଲା ବେଳେ ସେ ଯେ ମୁନି ସୁଲଭ କଥା କହୁନାହାନ୍ତି, କୁହାଯାଇ ପାରିବ ନାହିଁ । ବର୍ତ୍ତମାନ ତାଙ୍କରି ଭାଷାରେ ତାଙ୍କୁ ଖୋଜିବା,

"ଶାମୁକା ଗୋଟାଇ ପିଲେ
ଖେଳୁଥାନ୍ତି କରି ବାଲିଘର,
ସ୍ରୋତ ମୁଖେ ଯାଏ ଭାସି
ତାଙ୍କ ଡଙ୍ଗା ଶୁଖିଲା ପତର ।
ନାଚି ନାଚି ଯାଏ ଚାଲି ଦୂରେ
ଆନନ୍ଦେ ଖେଳନ୍ତି ପିଲେ,
ସଂସାରର ସମୁଦ୍ର ବେଳାରେ ।
ପିଲାଏ ନାହାନ୍ତି ଶିଖି ସମୁଦ୍ର ପହଁରା
ଶିଖିବି ନାହାନ୍ତି ଖୋଲି ଜାଲ ମାଛଧରା,
ଶାମୁକା ସଂଗ୍ରହକାରୀ ମୁକୁତା ଆଶାରେ
ଅତଳ ସମୁଦ୍ରେ ବୁଡ ପକାନ୍ତି ସେ ଧୀରେ
ବଣିକ ସକଳ
ନୌଯାତ୍ରା ତୋଳିଥାନ୍ତି ହୋଇ ଦଳ ଦଳ ।
ପିଲାଏ ଖୋଜନ୍ତି ନାହିଁ ଲୁକ୍କାୟିତ ଧନ
ଖୋଜନ୍ତି ବାଲିଗରଡ଼ା ଦେଇ ମନ ଧ୍ୟାନ ।
ତାକୁ ପୁଣି ବାଲିବୁକେ ଦିଅନ୍ତି ବିଛାଡ଼ି
ଜାଣନ୍ତିନି ଜାଲକୁ ସେ ଭିଡ଼ି ।

ଡ୍ବ୍ୟୁ.ବି.ୟିଟିସ୍

ସେପ୍‌ଟେମ୍ବର ୧୯୧୨

# ଅନୁବାଦକୀୟ ଅଗ୍ରଲେଖ.....

ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କର ଆଧ୍ୟାତ୍ମ ଅଭିଲେଖ ହେଉଛି ''ଗୀତାଞ୍ଜଳି'', ଯାହା ୧୯୧୩ ମସିହାରେ ବିଶ୍ୱ ସାହିତ୍ୟ କ୍ଷେତ୍ରରେ ଶ୍ରେଷ୍ଠବିବେଚିତ ହୋଇ, ସୁଇଡିସ୍ ଏକାଡେମୀର ନୋବେଲ କମିଟି ଦ୍ୱାରା ନୋବେଲ୍ ପୁରସ୍କାର ଲାଭ କରିଥିଲା । ପୁରସ୍କାର ପ୍ରାପ୍ତ ଗୀତାଞ୍ଜଳି ଓ ମୂଳ ଗୀତଞ୍ଜଳି ସମାନ ନୁହେଁ । ମୂଳ ଗୀତାଞ୍ଜଳିରେ ୧୫୭ଟି ଗୀତି କବିତା ଅଛି । କବି ସେଥିରୁ କେବଳ ୫୩ ନିର୍ବାଚିତ କବିତା ନେଇ ପୁରସ୍କାରପ୍ରାପ୍ତ ଗୀତାଞ୍ଜଳିରେ ସ୍ଥାନୀତ କରିଛନ୍ତି । ଅନ୍ୟ କବିତା ଗୁଡ଼ିକ ତାଙ୍କ ପୁସ୍ତକ ନୈବେଦ୍ୟ, ଗୀତିମାଲ୍ୟ ତଥା ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ହୋଇଥିବା କବିତା ଗୁଡ଼ିକରୁ ସଂଗ୍ରହ କରାଯାଇଛି ।

ପୁରସ୍କୃତ ଗୀତାଞ୍ଜଳିରେ ସର୍ବମୋଟ ୧୦୩ଟି ସୁନର୍ବାଚିତ ଆଧ୍ୟାତ୍ମ ଦର୍ଶନ ମୂଳକ କବିତା ସନ୍ନିବେଶିତ ହୋଇଛି । ରବୀନ୍ଦ୍ର ନାଥ ଠାକୁର ନିଜେ ଏହାକୁ ଇଂରାଜି ଭାଷାରେ ଅନୁବାଦ କରିଛନ୍ତି ।.ଏହି ଅନୁବାଦଟିକୁ "Indian Society of London" ୧୯୧୨ ମସିହାରେ ପ୍ରକାଶ କରିଥିଲେ । ଇଂରାଜିରେ ପ୍ରକାଶିତ ହେବାପରେ ଏହି ଅନବଦ୍ୟ କୃତିଟି ସାରାବିଶ୍ୱର ଦୃଷ୍ଟି ଆକର୍ଷଣ କଲା । ନୋବେଲ କମିଟିକୁ ତାଙ୍କ ନାମ ସୁପାରିଶ କରାଗଲା ଏବଂ ୧୯୧୩ ମସିହାରେ ସେ ସାହିତ୍ୟରେ ନୋବେଲ ପୁରସ୍କାର ପାଇଲେ । ଏହା ଫଳରେ ପ୍ରାଚ୍ୟ ପ୍ରତିଭା ବିଶ୍ୱସ୍ତରରେ ସ୍ୱୀକୃତ ହେଲା । ଶାନ୍ତିନିକେତନର ସୁବାସିତ ପୁଷ୍ପଟି ବିଶ୍ୱକୁ ମହକିତ କଲା ।

ବିଶ୍ୱକବି ରବୀନ୍ଦ୍ରନାଥଙ୍କ ସମକାଳୀନ ପାଶ୍ଚାତ୍ୟ ପ୍ରଖ୍ୟାତ କବିମାନେ ହେଲେ, ୟିଟସ୍, ଇଜରାପାଉଣ୍ଡ ଚାର୍ଲସ୍ ଆଣ୍ଡ୍ରୁଜ ପ୍ରଭୃତି । ଏକ ମନୋଜ୍ଞ ସନ୍ଧ୍ୟାରେ ସମସ୍ତେ ଶାନ୍ତିନିକେତନରେ କବିଗୁରୁଙ୍କ ସହିତ ମିଳିତ ହୋଇ, ତାଙ୍କର ଗୀତାଞ୍ଜଳି ଗାନ ଶୁଣିଥିଲେ । ସେମାନେ ବିହ୍ୱଳ ହୋଇ କହିଥିଲେ, ''ରବୀନ୍ଦ୍ର ସଙ୍ଗୀତର ମଧୁମଦିରା, ଆମମାନଙ୍କୁ ନିଶାସକ୍ତ, ମୋହାବିଷ୍ଟ ଏବଂ ସ୍ୱପ୍ନାତୁର କରିଦେଇ କେଉଁ ଅତୀନ୍ଦ୍ରିୟ

ରାଜ୍ୟକୁ ନେଇ ଯାଇଛି । ସତରେ ଗୀତାଞ୍ଜଳି, ସଙ୍ଗୀତମୟ, ଭାବମୟ, ଭକ୍ତିମୟ ଏବଂ ଆବେଗମୟ ଆବେଦନରର ଏକ ଆଲେଖ୍ୟ । ଏଥିରେ ଅନାସକ୍ତି ପ୍ରକଟିତ ହୋଇଥିଲେ ବି ବୈରାଗ୍ୟର ଚିତ୍ର ନାହିଁ ।

ପୁସ୍ତକର ଆଦ୍ୟ ପଲ୍ଲବରେ ନୋବେଲ୍ ପୁରସ୍କାର ପ୍ରାପ୍ତ ଗୀତାଞ୍ଜଳିର ଅନୁବାଦଟିକୁ ପାଠକମାନଙ୍କର ଅବଗତି ପାଇଁ ଦିଆ ଯାଇଛି । ଅପରାର୍ଦ୍ଧରେ ଅଛି, ମୂଳ ଗୀତାଞ୍ଜଳିର ଅବଶିଷ୍ଟ କବିତା ଗୁଡ଼ିକର ଅନୁବାଦ ।

ଇଂରାଜି ଗୀତାଞ୍ଜଳି କବିଙ୍କର ଗଦ୍ୟାନୁବାଦ । ଏଥିରେ ମଧ୍ୟ କବିଙ୍କର ଗଦ୍ୟମୟଛନ୍ଦ ଆପେ ଆପେ ଫୁଟି ଉଠିଛି । ଏହା ଅତ୍ୟନ୍ତ ସରଳ, ହୃଦୟ ସ୍ପର୍ଶୀ ଏବଂ ପାଠକ ମନରେ ଏକ ଅନନୁଭୂତ ରୋମାଞ୍ଚ ସୃଷ୍ଟି କରିଥାଏ । ବଙ୍ଗଳାର ମୂଳ କବିତା ଏବଂ କବିଙ୍କ ଅନୁଦିତ ଗଦ୍ୟ କବିତା ମଧ୍ୟରେ କେତେକ ଖଣ୍ଡନ ମଣ୍ଡନ ଥିବାରୁ, ମୁଁ ଉଭୟକୁ ନେଇ, ଭାବକୁ ଅକ୍ଷୁଣ୍ଣରଖି ସେହି କବିତା ଗୁଡ଼ିକୁ ଅନୁବାଦ କରିଛି ।

ବିଶ୍ୱକବି ରବୀନ୍ଦ୍ରନାଥଙ୍କର କବିତା ଗୁଡ଼ିକୁ ପାଠକଲେ ତାହା ମନକୁ ଏକ ମହତ୍ତର ଭାବବଳୟକୁ ନେଇଯାଏ । ଭାବାବେଗର ପୁଷ୍କଳ ପ୍ରକାଶ ସହିତ ମନୋଜ୍ଞ ଅଭିବ୍ୟକ୍ତିର ମଧୁର ମିଳନ, ଏହି କବିତା ଗୁଡ଼ିକରେ ହୋଇପାରିଛି । ରବୀନ୍ଦ୍ର ସଙ୍ଗୀତ ସ୍ୱପ୍ନ ଏବଂ ବାସ୍ତବତାର ଏକ ମିଳନ ମଞ୍ଚ । କବିତା ଗୁଡ଼ିକର ସରଳ ଶବ୍ଦ ଶିଳ୍ପରେ, ଛନ୍ଦଲାଳିତ୍ୟ, ଭାବବିଦଗ୍ଧତା, ଏବଂ ଭାବାଶ୍ରୟୀ ଭାଷାର ଆଲେଖ୍ୟ ଦେଖିବାକୁ ମିଳେ । ତା' ମଧ୍ୟରେ ଅଛି ପ୍ରତୀକାତ୍ମକ ଇଙ୍ଗିତ, ଯାହା କଳ୍ପନାର କାୟାରେ, ଭାବର ଛାୟାରେ ଏବଂ ମାଦକତାର ମାୟାରେ ରହସ୍ୟମୟ ହୋଇ ଉଠିଛି ।

ରବୀନ୍ଦ୍ର ନାଥଙ୍କର କବିତା ଗୁଡ଼ିକରେ ବ୍ରହ୍ମଚେତନା, ବ୍ରହ୍ମଉପାସନା, ବ୍ରହ୍ମୋପଲବ୍ଧି ଏବଂ ବ୍ରହ୍ମାନନ୍ଦ ଭରି ରହିଛି । ବ୍ରାହ୍ମ ଧର୍ମ ଦର୍ଶନର ବିଭୂତି ମଣ୍ଡିତ କବିତା ଗୁଡ଼ିକରେ ସମର୍ପଣର ମହାଭାବ ଦେଖିବାକୁ ମିଳେ । ନିର୍ବାଣ ବା ମୋକ୍ଷ ପ୍ରାପ୍ତି ପାଇଁ ନାହିଁ ଗଭୀର ଉତ୍ସୁକତା । ଜୀବ ପରମର ମହା ମିଳନହିଁ କବିତା ଗୁଡ଼ିକର ଅନ୍ତସ୍ୱର । ତେଣୁ କବି ନିଜକୁ ନାରୀ ଭାବାପନ୍ନ କରି ରସସିକ୍ତ କଣ୍ଠରେ

ଗାଇଛନ୍ତି -

(କ) ମୋରି ସାଥେ ମିଳନଟିକେ ପାଇଁ
କେବେଠୁ ତୁମେ ଆସୁଛ ଧାଇଁ
ମୁଁ ନିଜେ ଜାଣେ ନାହିଁ ।

(ଖ) ବନ୍ଧୁତୁମେ ! ପରାଣ ସଖା ମୋର,
ଆଜିଏ ଝଡ଼ରାତେ
ମୋର ସାଥେ ମିଳନ ପାଇଁ
ତୁମର ଅଭିସାର ।

ପରମ ପ୍ରେମିକଙ୍କ ସହିତ ମହା ମିଳନ ପାଇଁ ଅନ୍ତରକୁ ଶୁଦ୍ଧ ପବିତ୍ର ଓ ଉଜ୍ଜ୍ୱଳ କରିବାର ଆବଶ୍ୟକତା ଉପଲବ୍ଧିକରି ସେ ଗାଇ ଉଠିଛନ୍ତି,

"ଅନ୍ତର ମୋର ବିକଶିତ କର
ଅନ୍ତରତମ ହେ !
ନିର୍ମଳକର ଉଜ୍ଜ୍ୱଳ କର
ସୁନ୍ଦର କର ହେ !

ଏ ଦୁଃଖମୟ ସଂସାର ଓ ଯାତନା, ପୀଡ଼ନା ଜର୍ଜରିତ ଜୀବନରୁ ନିଜକୁ ରକ୍ଷା କରିବା ପାଇଁ ସେ ପ୍ରାର୍ଥନା କରି ନାହାନ୍ତି କିନ୍ତୁ ସାହସର ସହିତ ଏହାକୁ ସମ୍ମୁଖୀନ ହେବାକୁ ସେ ଶକ୍ତି ଓ ଧୈର୍ଯ୍ୟ ନିବେଦନ କରିଛନ୍ତି ।

"ବିପଦେ ମୋତେ ରକ୍ଷାକର
ଏ ନୁହେଁ ମୋର ପ୍ରାର୍ଥନା
ବିପଦକୁ ମୁହିଁ ନକରେ ଯେପରି ଭୟ,
ଦୁଃଖ ତାପଦଗ୍ଧ ବ୍ୟଥିତ ଚିତ୍ତକୁ
ନଦେଲେ ସାନ୍ତ୍ୱନା ଅବା
ଶକ୍ତି ଦିଅହେ ! ଦୁଃଖକୁ କରେ ଜୟ ।"

ଏହା ଆଲୋଚନାର ପୃଷ୍ଠା ହୋଇ ନଥିବାରୁ ମୁଁ ଆଉ ଅଧିକ ଉଦ୍ଧୃତି ଦେଉନାହିଁ ।

କବିତା ଗୁଡ଼ିକୁ ଅନୁବାଦ କଲାବେଳେ ମୁଁ ତନ୍ମୟ ବିଭୋର ହୋଇଛି, ମଝିରେ ମଝିରେ ଝୁଣ୍ଟେଇଛି କେତେ ମୌଳିକ ବଙ୍ଗଳାଶବ୍ଦକୁ ନେଇ । ନିଜ ସ୍ଥିତିରେ ସେ ଶବ୍ଦଗୁଡ଼ିକ ଯେପରି ପ୍ରଭାବଶାଳୀ, ଭାଷାନ୍ତର ବେଳେ ତାହା କିଛି ପରିମାଣରେ ମ୍ଳାନ ହେବା ସ୍ୱାଭାବିକ । ଅନେକ ପ୍ରତୀକାତ୍ମକ ଶବ୍ଦକୁ ମଧ୍ୟ ସେଇ ନ୍ୟାୟରେ ମୁଁ ରୂପ ଦେଇ ତା'ର ନିକଟବର୍ତ୍ତୀ ହୋଇ ପାରିଛି କି ନାହିଁ ପାଠକ କହିବେ । ବଙ୍ଗଳା କବିତାକୁ ଓଡ଼ିଆରେ ପ୍ରକାଶ କରିବା ସହଜ ବୋଲି କହୁଥିବା ମତ ସହିତ, ମୁଁ ଏକମତ ନୁହେଁ । ଯମଜସନ୍ତାନ ଦୁଇଟିର ଆକୃତିଗତ ସାମଞ୍ଜସ୍ୟ କିଛିଟା ଥାଇପାରେ କିନ୍ତୁ, ରୁଚି, ଚଳଣି, ଭାବାବେଗ, ଦର୍ଶନରେ ମୌଳିକତା ଅଛି । ସେହି ମୌଳିକତା ଯେତେ ରକ୍ଷା କରାଯାଇପାରେ, ତାହା ସେତେ ଆକର୍ଷଣୀୟ ଓ ହୃଦୟ ଗ୍ରାହୀ ହୁଏ ।

ଏହି ବହୁଚର୍ଚ୍ଚିତ ପୁସ୍ତକର ଅନୁବାଦଟିକୁ ଓଡ଼ିଆ ଭାଷା ଉଦ୍ୟାନରେ ଫୁଟାଇବାକୁ ଯାଇ, ଏହାର ମାଟି, ପାଣି, ପବନରେ ରସୋତ୍ତୀର୍ଣ୍ଣ କରିବାକୁ ଚେଷ୍ଟା କରିଛି । ମଣ୍ଡନବିନ୍ୟାଶ ଦୃଷ୍ଟିରୁ ଛନ୍ଦର ବେହରଣ, ଆବଶ୍ୟକସ୍ଥଳେ ପରିବର୍ତ୍ତନ କରାଯାଇଥିଲେ ମଧ୍ୟ, ଭାବ ଅତୁଟ ଅଛି । ମହାକବିଙ୍କର ମହାପୁଷ୍ପଟିକୁ ଫୁଟାଇବାକୁ ଯାଇ, ମୁଁ ଏକ ଅନିର୍ବଚନୀୟ ଆନନ୍ଦ ଉପଭୋଗ କରୁଛି । ପ୍ରକାଶକ ଏହାକୁ ଗଭୀର ଶ୍ରଦ୍ଧାର ସହିତ କବି ଗୁରୁଙ୍କ ୧୪୫ତମ ଜନ୍ମ ଜୟନ୍ତୀରେ ଲୋକାର୍ପଣ କରିଥିବାରୁ, ମୁଁ ତାଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛି । ପାଠକମାନେ ଶ୍ରଦ୍ଧାର ସହିତ ଏହାକୁ ଗ୍ରହଣକଲେ ମୋର ଶ୍ରମ ସାର୍ଥକ ହେବ ।

୦୯.୦୫.୨୦୦୬ | ବିନୀତ
କବିଗୁରୁଙ୍କ ୧୪୫ତମ, | **ନରସିଂହ**
ଜନ୍ମଜୟନ୍ତୀ, ଭୁବନେଶ୍ୱର

# ଗୀତାଞ୍ଜଳି

## ରବୀନ୍ଦ୍ରନାଥ ଠାକୁର

ନୋବେଲ ପୁରସ୍କାର
ପ୍ରାପ୍ତ
ଗୀତାଞ୍ଜଳି

ପ୍ରଥମ ପଲ୍ଲବ

ସମ୍ପାଦନା ଓ ଭାଷାନ୍ତର :
ଶ୍ରୀ ନରସିଂହ ମିଶ୍ର

ବି.ଦାସ ଆଣ୍ଡ କମ୍ପାନୀ
ଭୁବନେଶ୍ୱର

# ୧

ତୁମେତ କରିଛ ପ୍ରଭୁ ! ଦେହରୁ ଅଦେହ
ଭଙ୍ଗୁର ଜୀବନ ମମ, ଶୂନ୍ୟ ଏ କଳସୀ -
ବାର ବାର ଭରିଅଛ ନୂତନ ଜୀବନେ
ଉଠିଅଛ ଆନନ୍ଦେ ଉଲ୍ଲସି ।
ଏ ତୁମ କାମନା,
ପୂରି ଅଛି ସିନା ।

ତୁମ ସଙ୍ଗୀତର ତାନେ,
ନଦୀ, ବନ, ପାହାଡ଼ ପର୍ବତ
ସୁମଧୁର ସ୍ୱର ତୋଳେ
ଅବ୍ୟକ୍ତ ଶାଶ୍ୱତ ।
ଉଛୁଳଇ ଏ ବିଶ୍ୱ ଭୁବନ,
ଅବିନାଶୀ ସ୍ପର୍ଶ ପାଇ ତୁମ,
ଅନ୍ତର ଉଲ୍ଲାସେ ନାଚେ ହୋଇ ଆତ୍ମଲୀନ ।
ଉଚ୍ଚାରଣ ଅନିର୍ବଚନୀୟ,
ଆହେ ଦୟାମୟ !

ଅସୁମାର ମହାଦାନେ ତବ, ଭରିଅଛି ଏ ଜୀବନ ମମ
ହାତପାତି ଅଛି ମୁଁ ଅନାଇ, ତଥାପି ତା' ରହିଅଛି ଶୂନ୍ୟ ।
ବର୍ଷ ବର୍ଷ ଧରି,
ଚାଲିଅଛ ତୁମେ ତାହା ଭରି ।



# ୨

ଯେତେବେଳେ ପ୍ରଭୁ ! ନିର୍ଦ୍ଦେଶ ମିଳେ
ଗାଇବାକୁ ତୁମ ଗୀତ,
ଅନ୍ତର ମମ ଗର୍ବରେ ଯାଏ ଭରି,
ତମରି ମୁଖକୁ ଚାହେଁ ମୁଁ ନିର୍ନିମେଷେ
ନୟନୁ ମୋ ଯାଏ ଆବେଗ ଅଶ୍ରୁ ଝରି ।
ଜୀବନର ଯେତେ ଦାରୁଣ ବେସୁରା ତାନ
ଏକୀଭୂତ ହୁଏ,
ସେଇ ଏକ ମଧୁ ମହାସଙ୍ଗୀତ ସ୍ୱରେ,
ଅର୍ଚ୍ଚନା ଗୀତି ଊର୍ଦ୍ଧ୍ୱେ ଉଠଇ ମମ,
ଦିଶଇ ଯେପରି ମୁଗ୍ଧ ବିହଙ୍ଗାୟନ
ନୀଳ ସାଗରର ତୀରେ,
ନୀଳିମ ବିତାନ ପରେ ।
ମୁଁ ଜାଣେ ପ୍ରଭୁ ହେ ! ପ୍ରାର୍ଥନା ମୋର
ଛୁଇଁଛି ହୃଦୟ ତମ,
ଉଭା ହୋଇଛି ମୁଁ ସମ୍ମୁଖେ ଆଜି
ତା'ର ଉଦ୍‌ଗାତା ସମ ।
ବ୍ୟାପ୍ତ ବିତାନେ ପ୍ରାଣ ସଙ୍ଗୀତ
ଛୁଇଁଛି ପଦାରବିନ୍ଦ
ଯାଇ ପାରିବିନି ପାଇ ପାରିବିନି-
ପରଶ ସେ ମକରନ୍ଦ ।
ତମଗୀତ ଗାଇ ସବୁ ମୁଁ ଭୁଲିଛି
ଉଛୁଳେ ଆନନ୍ଦ ସିନ୍ଧୁ,
ତୁମେ ମୋ' ପରମ ଜୀବନ କରତା
ତୁମେ ମୋ ପରାଣବନ୍ଧୁ ।

ମୂଳ ଗୀତାଞ୍ଜଳି - ୭୮

●

# ୩

କିପରି ତୁମେ ପ୍ରଭୁ ହେ ! ତୋଳଗାନ
ନିର୍ବାକେ ମୁଁ ନିରବେ ଶୁଣେ-
ଦେଇ ମୋ ମନ ପ୍ରାଣ ।
ବିଶ୍ୱବୁକେ ସେ ମହାଗୀତ
ଆଲୋକ ଯାଏ ଝରି,
ସେ ସ୍ୱର ରାଗ ଉର୍ଦ୍ଧ୍ୱଲୋକେ
ଗଗନେ ଯାଏ ଖେଳି ।
ସଙ୍ଗୀତର ପୁଣ୍ୟ ସୁରଧୁନୀ,
ବ୍ୟାକୁଳେ ଧାଏଁ ପାଷାଣ ବୁକୁ ଚିରି ।

ଭାବୁଛି ଖାଲି ତୋଳିବି ସେଇ ସ୍ୱର
ଖୋଜିଲେ ତାହା ମିଳୁନି କଣ୍ଠେ ମୋର ।
ବାହାରେ ଖାଲି କଥା ଯେ କେଇ ପଦ
ତୋଳେନି ତାହା ସଙ୍ଗୀତର ନାଦ ।
ବିକଳେ ମୁହିଁ ଖାଲି
ତୁମକୁ ଭାଳି ଭାଳି ।
ହୃଦୟ ମୋର ଦେଇଛ ପ୍ରଭୁ ଛନ୍ଦି,
ସେ ମହାଗୀତେ ମନକୁ ମୋର
କରିଛ ପ୍ରଭୁ ବନ୍ଦୀ ।
ଅବ୍ୟକ୍ତ ଅନନ୍ତ
ସେ ମହା ସଙ୍ଗୀତ ।।

ମୂଳ ଗୀତାଞ୍ଜଳି - ୨୨

●

# ୪

ହେ ଜୀବ ଜୀବନ ! ଶରୀରକୁ ମୋର
କରେ ମୁଁ ପୁଣ୍ୟ ପୁରୀ
ଜାଣିଛି ମୁଁ ତୁମ ପୁଣ୍ୟ ପରଶ
ଅଙ୍ଗେ ମୋ ଅଛି ଭରି ।
ଭାବ ଜଗତରୁ ଦୂର କରିଦିଏ
ଅସତ୍ୟ ଯାହା ମଣି
ମୋ ମନ ବିବେକ ଆଲୋକିତ କରେ
ତୁମର ସତ୍ୟବାଣୀ ।

ଅପକର୍ମକୁ ଅନ୍ତର ମୋର
କରିବାକୁ ପ୍ରଭୁ ! ଦୂର
ପ୍ରେମ ପାରିଜାତ ଫୁଟାଇ ଦିଏ ମୁଁ
ହସାଇ ହୃଦୟ ପୁର ।
ନିଭୃତ ଏଇ ଅନ୍ତରେ ପ୍ରଭୁ ମମ,
ଜାଣିଅଛି ତୁମେ ଆସନ ପାତିଛ,
ଆହେ ଅନ୍ତରତମ ।

ଶକ୍ତିର ତୁମେ ପରମ ଉତ୍ସ
ସକଳ କର୍ମ ପାଇଁ,
ପ୍ରକାଶିତ କରେ ତାହାମୁଁ କରମେ,
ଆହେ ମୋ ଜୀବନ ସାଇଁ !
ତୁମ ଶକ୍ତିରେ ଅଟେ ମୁଁ ଶକ୍ତିମାନ,
ଭଗବାନ....ଭଗବାନ ।





ଦିଅ ହେ ପ୍ରଭୁ ! କରୁଣାଟିକେ ଢ଼ାଳି
ତମକୁ କ୍ଷଣେ ପାଇବି ପାଶେ
ଏତିକି ମୋର ଅଳି ।
ଯା'କିଛି ଅଛି କାମ,
ସାରିବି ସବୁ ପାଇଲେ ଦେଖା ତମ ।

ନୟନ ପଥୁ ଦୂରେଇ ଗଲେ
ତମରି ରୂପ ଶୋଭା
ଶାନ୍ତି କେବେ ମିଳେନି ମୋତେ
ନୟନ ମନ ଲୋଭା !
ସକଳ କର୍ମ ବ୍ୟର୍ଥ ଲାଗେ ମୋତେ,
ଅଯଥା ଘୂରେ ନିଃସୀମ ଶ୍ରମ ସାଗରେ
ମୁହିଁ ସତେ !

ବାତାୟନେ ମୋ ଗ୍ରୀଷ୍ମ ଆସି
ଦୀର୍ଘଶ୍ୱାସ ବାହେ
ଚୁପି ଚୁପି ସେ କି କଥା କାନେ କହେ ?
ଗୁଞ୍ଜରଣ ତୋଳଇ ମହୁମାଛି
କୁସୁମ କୁଞ୍ଜେ ତା'ଅଭିସାର ରଚି ।
ବ୍ୟାକୁଳ ମୋର ମନ,
ଦେଖିବ, ବୋଲି ସ ରୂପ ଅପଘନ ।

ହେ ପ୍ରାଣସଖା ! ଆସିଛି ମଧୁବେଳା
ଶାନ୍ତମନେ ନିରବେ ଆଜି ବସିବି ମୁହିଁ ପରା ।
ଶ୍ରୀମୁଖ ତମ ବ୍ୟାକୁଳେ ଚାହିଁ ଚାହିଁ
ସମର୍ପଣ ସଙ୍ଗୀତ ମୁଁ, ନିରବେ ଯିବି ଗାଇ,
ପ୍ରଶାନ୍ତ ଏ'ମୁହୂର୍ତ୍ତ ମୋ' ଖାଲି,
ଦିଅ ହେ ପ୍ରଭୁ ! କରୁଣାଟିକେ ଢ଼ାଳି ।
ଏତିକି ମୋର ଅଳି ।



## ୬

ଏ ଛୋଟ ଫୁଲଟି ଉଠିଛି ବୃନ୍ତେ ଝଳି
ତୋଳିନିଅ ବେଗେ ନିଅ ତୁମ ହାତେ ତୋଳି ।
ନ ହେଲେ ସେ ଯିବ ଛିଡ଼ି,
ଧୂଳିରେ ପଡ଼ିବ ଝଡ଼ି ।
ଥାନ ଟିକେ ତାକୁ ନ ମିଳିଲେ ନାହିଁ
ତମରି କଣ୍ଠହାରେ,
ତଥାପି ହାତର ପୀଡ଼ା ପରଶରେ
ସମ୍ମାନ ଦିଅ ତାରେ ।
ଆନନ୍ଦେ ତୁମେ ହାତ ତୋଳ-
ତୋଳିବାକୁ ।
ଆଶଙ୍କା ଜାଗେ ମନେ,
ଜାଣିବା ଆଗରୁ ଅନ୍ତିମ ବେଳା
ଆସିଯିବ କେଉଁକ୍ଷଣେ ।

ସମର୍ପଣର ମୁହୂର୍ତ୍ତ ଯିବ ଚାଲି
ଅନ୍ଧାର ଘୋଟି ଆସିବା ଆଗରୁ
ନିଅ ତାକୁ ବେଗେ ତୋଳି ।
ଫୁଲଟିର ଏଇ ରଙ୍ଗ ହେଲେବି ଫିକା
ହେଲେ ଅବା ହେଉ ଗନ୍ଧ ମହକ ହରା,
ତଥାପି ତମର ସେବାରେ ଲାଗୁ ସେ ଫୁଲ
ଗଡ଼ି ଯାଏ ବେଳପରା
ନେଇ ଯାଅ ବେଗେ ତୋଳି
ନହେଲେ ପଡ଼ିବ ଝଡ଼ି ।

ମୂଳ ଗିତାଞ୍ଜଳି -୮୬

●

# ୭

ଅବ୍ୟକ୍ତ ଆଗୋ ! ଅନନ୍ତ ପ୍ରେମମୟୀ !
ତୁମ ଭୂଷଣର ପ୍ରଶସ୍ତି ଆଜି
ମୋ ଗୀତେ ମୁଁ ଗାଉନାହିଁ ।
ତୁମ ପାଶେ ନାହିଁ ରୂପ ଅହମିକା ମୋହ
ନିର୍ଲିପ୍ତ ତୁମେ ନିର୍ମୋହ..ନିର୍ମୋହ ।

ଅଙ୍ଗ ଭୂଷଣ ବାଧା ଦିଏ ପ୍ରେମ
ନିବିଡ଼ ମିଳନ ରାଗେ,
ମିଳନ ପିପାସୀ ମଧ୍ୟେ ହେଲେ ତା'ଉଭା,
ରୁଣୁଝୁଣୁ ତାନେ ହଜିଯାଏ ତୁମ-
ମାଦକିତ ପ୍ରୀତି, ଗୁଞ୍ଜନ ମନଲୋଭା ।

ବିଶ୍ୱ ଭୁବନ ମହାକବି ଆହେ !
ତବ ଜ୍ୟୋତି ଦରଶନେ,
ମୋ କବିପଣିଆ ଅହମିକା ଲିଭେ
ଲଜ୍ଜା ଓ ଅପମାନେ ।
ନତଜାନୁ ହୋଇ ବସିଛି ଚରଣ ତଳେ,
ଏ ଜୀବନ କର ଶୁଦ୍ଧ ସରଳ
ତୁମରି କରୁଣା ବଳେ ।
କରିଦିଅ ତାହା ତୁମରି ହାତର ବେଣୁ
ଭରିଦିଅ ତୁମ ମଧୁ ସଙ୍ଗୀତ ରେଣୁ ।





ରାଜାର ବେଶେ କରିଛ ଯେଉଁ
ଶିଶୁକୁ ବିଭୂଷିତ,
ମଣ୍ଡି ତା'ର ଗଳାରେ ରତ୍ନହାର ।
କ୍ରୀଡ଼ା ଚଞ୍ଚଳ ଶିଶୁର ଖେଳେ
ଦିଅଇ ତାହା ବାଧା,
ମଉଳେ ଦୋଳିଖେଳର ସୁଖ ତା'ର ।
ଯିବ ତା'ଛିଡ଼ି ଆଘାତ ପାଇ
ଧୂଳିର ଦାଗେ ମଳିନ ହୋଇ,
ଶୈଶବର ସଂସାରରୁ
ରଖେ ସେ ତାକୁ ଦୂରେ,
କରିବା ପାଇଁ ସେ ଖେଳାବୁଲା, ଡ଼ରେ ।
ସଜାନା ତାକୁ ରାଜାର ବେଶେ
ଗଳାର ରତ୍ନ ହାରେ ।

କି ହେବ ମାଗୋ, ରାଜାର ବେଶ
କି ହେବ ମଣି ରତନ ଗଳା ମାଳି,
ଏ ଖୋଲା ବାୟୁ ସୂର୍ଯ୍ୟତାପ
ପାଇଲା ନାହିଁ...
ଯଦି ସେ ଧରାଧୂଳି !
ଦୁଆର ଦିଅ ଖୋଲି,
ଖେଳୁ ସେ ଧୂଳି ଖେଳୁ ସେ ମନଭରି ।
କରନା ତାକୁ ରାଜାର ବେଶ
ଦିଅନା ରତ୍ନମାଳି ।

ଦେଖ ଗୋ ଦେଖ, ଚାଲେ ଏ ମଞ୍ଚେ .
ବିଶ୍ୱ ଜନ ମେଳା,
କେତେ ଯେ ଲୀଳା ଖେଳା ।
ଯେଉଁଠି ଛୁଟେ ବିପୁଳ ଗୀତି ସ୍ୱର
ବଞ୍ଚିତ ଗୋ କରନା ତାକୁ,
ଏ ଅଟେ ପରା, ଶିଶୁର ଅଧିକାର ।
ନକରୁ ତାକୁ ଦୂର,
ରାଜାର ବେଶ ଗଳାର ମଣିହାର ।

ମୂଳଗୀତାଞ୍ଜଳି - ୧୨୭



# ୯

ନିଜର ଭାରା ମସ୍ତକେ ମୋ,
ବହିବି ନାହିଁ ଆଉ,
ନିଜର ଘରେ କାଙ୍ଗାଳ ମୁଁ,
ପ୍ରଭୁ ହେ ତୁମେ -
ପାଖରେ ଥାଉ ଥାଉ ।

ଚରଣେ ସବୁ ଅରପି ତବ
ଯିବି ମୁଁ ଚାଲି ଦୂରେ,
ଚାହିଁବି ନାହିଁ ଫେରି, ମୁଁ କେବେ
ମରେମେ ଦୁଃଖ ଭାରେ ।
ଖବର କିଛି ରଖିବି ନାହିଁ
କୌଣସି କଥା କହିବି ନାହିଁ,
ଜାଣିଛି, ସବୁ ଭାରାକୁ ପାରବହି ।
ପ୍ରଭୁ ! ନିଜର ଭାରା, ନିଜର ଶିରେ
ବହିବି କାହିଁ ପାଇଁ ?

ମୋ, ବାସନାବାୟୁ ସ୍ପର୍ଶକରେ ଯା'ରେ,
ସେ ଦୀପାଲୋକ ନିଭଇ ବାରେ ବାରେ ।
ଅଶୁଚି ହାତେ ବାଢ଼େ ଯେ ଉପହାର
କରନି ପ୍ରଭୁ ! ଗ୍ରହଣ ତାହା ତା'ର ।
ପୂଜନେ ତମ ଲାଗିବ ନାହିଁ ପରା
ବାସନା ବାୟୁଝରା,
ଶୁଦ୍ଧପୂତ ହୃଦୟଭରା ଯେ ପ୍ରେମ ଉପହାର
ଘେନ ହେ ପ୍ରଭୁତା'ର !

ମୂଳଗୀତାଞ୍ଜଳି - ୧୦୫

●

# ୧୦

ପ୍ରଭୁହେ ! ·
ଦୀନୁ ଦୀନତର ଅଧମୁଁ ଅଧମ
ନୀଚୁ ନୀଚତର ଯହିଁ
ବଞ୍ଚିତ ସେଇ ସର୍ବହରାର
ଗହଣରେ ଥାଅ ରହି ।
ଯେତେବେଳେ ପ୍ରଭୁ !
ପ୍ରଣମେ ତୁମରି ପଦେ
ପ୍ରଣତି ମୋ'ର ଜାଣେନା ଅଟକେ କାହିଁ ।
ଛୁଇଁ ପାରେନା ତା' ତମରି ଚରଣ ତଳ
ଦୀନ ହୀନ ସେଇ ବଞ୍ଚିତ ଜନ
ପଥପରେ ଥାଏ ରହି
ପ୍ରଣାମ ମୋ ତମ ପଦରେ ପହଞ୍ଚେ ନାହିଁ ।

ପାରେନା ପହଞ୍ଚି ମୁଁ ମଦମତ୍ତ
ଅହଂକାରର ଭାରେ
ତୁମେ ଯହିଁ ବିଜେ ରିକ୍ତ ଭୂଷଣ
ଦୀନ ଦରିଦ୍ର ପୁରେ ।
ବଞ୍ଚିତ ଚିର ସର୍ବହରାର ସାଥେ
କେତେ ତଳେ କେତେ ପଛେ ।

ଯେଉଁଠାରେ ଅଛି ଧନମାନ ଶିରୀ
ସମ୍ପଦ ସବୁ ଭରି
ସେଇଠାରେ ମୁହିଁ ଖୋଜୁଛି
ତମକୁ ହରି ।

ନଥାଅ ସେଠାରେ
ତମେ ସାଥିହୀନ ସାଥୀ !
ପହଞ୍ଚି ପାରେନା ହୃଦୟ ମୋ ତହିଁ
ତୁମେ ଅଗତିର ଗତି ।
ଖୋଜିଲେ ମୁଁ, ମିଳନାହିଁ,
ପ୍ରଣାମ ମୋ'ର ନପାରେ ଚରଣ ଛୁଇଁ ।।

ମୂଳଗୀତାଞ୍ଜଳି - ୧୦୭



## ୧୧

ଭଜନ ଆଉ ପୂଜନ ତୋର, ସାଧନା, ଆରାଧନା
ବ୍ୟର୍ଥ ସବୁ ସିନା,
ନିର୍ଜନ ଏ ଅନ୍ଧକାରେ
ରୁଦ୍ଧ ଦ୍ୱାର ମନ୍ଦିରର କୋଣେ,
କା'ପୂଜା କରୁ ନିରବେ, ସଂଗୋପନେ ?
ଦେଖରେ ଦେଖ, ନୟନ ଖୋଲି ଦେଖ
ସମ୍ମୁଖରେ ଦେବତା ନାହିଁ
କରୁ ତୁ ତୁହି, କାହାର ପୂଜା ପାଠ ?

ଯେଉଁଠି ଚାଷୀ ଏ ଧରାବୁକୁ
ରୁକ୍ଷ ମାଟି ଚିରେ,
ଶ୍ରମିକ ଯହିଁ ପଥରକାଟି
ରାସ୍ତା କେତେ ଗଢ଼େ ।
କରନ୍ତି ଚାଷ ବାସ,
କଠିନ ଶ୍ରମେ ଖଟନ୍ତି ବାରମାସ ।

ସେଇଠି ପ୍ରଭୁ ଅଛନ୍ତି ତାଙ୍କ ସାଥେ
ବରଷା, ଖରା, କାକରଭିଜା ଶୀତେ ।
ଶରୀର ବାସ ଭୂଷଣ ଧୂଳିମଖା,
ତାଙ୍କରି ବେଶେ ତାଙ୍କରି ସାଥେ
ଅଛନ୍ତି ପ୍ରାଣ ସଖା ।
ବସନ ଶୁଚି ଛାଡ଼ି,
ଧୂଳିଆ ବେଶେ ଭୂଷିତ ତାଙ୍କ ପରି ।
ଦେଖରେ ଦେଖ, ନୟନ ଖୋଲି ଦେଖ
ସମ୍ମୁଖରେ ଦେବତା ନାହିଁ,
କରୁଚୁ ତୁହି, କାହାର ପୂଜା ପାଠ ?

ମୁକତି କାହୁଁ ମିଳିବ କହ ଆରେ !
ଦେବତା ପରା ବନ୍ଧା ତାଙ୍କ,
ସର୍ଜନାର ଡ଼ୋରେ,
ସବୁରି ସାଥେ ଅମାପ ଆନନ୍ଦରେ ।
ଥାଉରେ ଥାଉ ତୋ ପୂଜାଫୁଲ ମାଳା
ରଖିଦେ ତୋର ମନର ପୂଜା ଡ଼ାଲା ।
ଛିଡୁ ତୋ' ବାସ ଲାଗୁରେ ଧୂଳି ମଳି
'କର୍ମଯୋଗେ' ହୁଅରେ ଯୋଗୀ
ତାଙ୍କରି ସାଥେ ମିଳି ।
ଦେଖରେ ଦେଖ ନୟନ ଖୋଲି ଦେଖ
ସମ୍ମୁଖରେ ଦେବତା ନାହିଁ, କରୁଚୁ ତୁହି,
କାହାର ପୂଜାପାଠ ?

ମୂଳଗୀତାଞ୍ଜଳି - ୧୧୯

●

# ୧୨

ଯାତ୍ରା ପାଇଁ ସମୟ ଦୀର୍ଘ
ରାସ୍ତା ବହୁଦୂର
ଆଦ୍ୟାଲୋକ ରଥରେ ବସି
ଯାତ୍ରାବାଢ଼େ ମୋର ।

କେତେ ଯେ ଗ୍ରହ ତାରକା ବୁକେ
ଥାପିଲି ପଦ ଚିହ୍ନ
କେତେ ଯେ ମରୁ ପାହାଡ଼ ବଣ
'କରିଲି ଅତିକ୍ରମ ।
ତମରି ପାଶେ ଆସିବା ପାଇଁ ସାଇଁ !
ସବୁଠୁ ଦୀର୍ଘ ଯାତ୍ରାପଥ ଏଇ ।
ସରଳ ଏକ ସଙ୍ଗୀତର ସ୍ୱର
ଶିଖିବା ପାଇଁ ନେବାକୁ ହୁଏ
କଠିନ ଶ୍ରମ ଭାର ।
ଯାତ୍ରାକାଳେ ଅପରିଚିତ
ଯେତୋଟି ଘର ଭେଟେ
ଦୁଆରେ ଆସି ଆଘାତଦିଏ
ଅଟକି ଯାଇ ପଥେ ।
ନିଜର ବୋଲି ମଣି,
ନିରାଶେ ପାଦ ଫେରାଇ ଆଣେ ପୁଣି ।

ବାହାର ବିଶ୍ୱ ବ୍ରହ୍ମାଣ୍ଡରେ
ଜୀବନ ବୁଲେ ଘୂରି
ଶେଷରେ ପାଏ ପୁଣ୍ୟତମ
ନିଭୃତ ସେ ପୁରୀ ।

" ପ୍ରଭୁ ! କେଉଁଠି ଅଛ ତୁମେ ?"
ଖୋଜିବା ପାଇଁ ବିକଳେ ଖାଲି
ନୟନ ମୋର ଘୂମେ ।
ବନ୍ଦ କଲେ ଆଖି,
ଉତ୍ତର ଆସେ, " ମୁଁ ପରା ତୋର ସାଥୀ" ।

ଦୁର୍ବାର ସେ ଜିଜ୍ଞାସାର ସ୍ୱର
'କେଉଁଠି ତୁମେ ବିରାଜ ପ୍ରଭୁ ! ମୋର
ପ୍ରଶ୍ନ ସବୁ ସହସ୍ରଧାର ଲୋତକେ ଯାଏ ମିଶି
ତୁମର ସେଇ ଅଙ୍ଗୀକାର ପ୍ଲାବନେ ସଖା !
ବିଶ୍ୱ ଉଠେ ହସି ।
ରହିଛି ମୁହିଁ ଏଥି ।
ରହିଛି ମୁହିଁ ଏଥି ।



## ୧୩

ଯେ ଗୀତ ମୁହିଁ ଗାଇବା ପାଇଁ
ଆସିଛି ଏଥି ଧାଇଁ,
ସେ ଗୀତ ଆଜିଯାଏ ମୁଁ କେବେ
ପାରିଲି ନାହିଁ ଗାଇ ।
ସାଧୁଛି ଖାଲି ସ୍ୱର,
ଗାଇବା ପାଇଁ ବ୍ୟାକୁଳ ମନ ମୋର ।

ସାଧନା ସିନା କରୁଛି ମୁହିଁ
ପାରୁନି ତାହା ସାଧି,

ଗାଇବାପାଇଁ ପ୍ରୟାସ କରେ
ଖୋଲୁନି ମୋର ପାଟି ।
ନପାରି ଗାଇ ମନରେ ବହେ ବଥା,
ଗାଇବା ପାଇଁ ଚରମ ବ୍ୟାକୁଳତା ।

ଏ ଯାଏ ଫୁଟି ନାହିଁ ସେ ଫୁଲ
ପବନ ବହି-ଲାଣି
ଦେଖିନି ତା'ର ହସିଲା ମୁହଁ
ଶୁଣିନି ତା'ର ବାଣୀ ।
ମଧୁର ପଦ ଶବ୍ଦ ଶୁଭେ ତା'ର
ସେ ଯାଏ ଆସେ, ଯେ ବାଟେ ମୋର ଘର ।
ଆସନ ପାତି ସଜାଇବାରେ
ବିତିଲା ଦିନ ସାରା,
କିମିତି ତାଙ୍କୁ ଡ଼ାକିବି ଘରେ
ପ୍ରଦୀପ ନାହିଁ ପରା ।
ମିଳନ ପାଇଁ ଉତ୍କଣ୍ଠିତ ମନ,
ପ୍ରତୀକ୍ଷାରେ କଟଇ ଖାଲିଦିନ ।

ମୂଳଗୀତାଞ୍ଜଳି-୩୯



# ୧୪

ଜୀବନେ ମମ କାମନା ଅସୁମାର
ପୂରଣ ପାଇଁ ଡ଼ାକିଛି ପ୍ରଭୁ !
ବିକଳେ ବାର ବାର ।
ପ୍ରତ୍ୟାଖ୍ୟାନ କରିଛ ତାହା ସବୁ
ରକ୍ଷାକରି ଅଶୁଭ ଆଶା -
ମୋହରୁ, ମୋତେ ପ୍ରଭୁ !
ଦେଇଛ ସ୍ନେହ ଆଶିଷ କେତେ ଭରି,
କରୁଣାନିଧି ! କରୁଣା ମୋତେ କରି ।

ଅନନ୍ତ ଜ୍ୟୋତି, ଆକାଶ, ଆଉ
ଶରୀର, ମନ, ପ୍ରାଣ
ଲଭିଛି ପ୍ରଭୁ ! ଏ ଅଯାଚିତ
ମହାନ ତୁମ ଦାନ ।
ଯୋଗ୍ୟ ମୋତେ କରିଚ ପ୍ରଭୁ ସତେ,
ଅଦମ୍ୟ ସେ ବାସନା ଜାଲୁ
ରକ୍ଷା କରି ମୋତେ ।

ମନ୍ଥର ମୋ ଅନ୍ୱେଷଣ
ଲକ୍ଷ୍ୟ ପଥ ପାଏନି କେବେ ଖୋଜି
କେବେ ବା ମୁହିଁ ପାଗଳ ହୁଏ
ଆନନ୍ଦରେ ହଜି ।
ଏବେଳେ ପ୍ରଭୁ ତୁମେ
ନଆସି ପାଶେ ଲୁଚହେ ! କେଉଁ ଧାମେ ?

ବିପଦୁ କେତେ କରିଛ ରକ୍ଷା
ବିଷୟ ମୋହ-ମୁକ୍ତ କରି ମନ,
ଗ୍ରହଣ ମୋତେ କରିବ ବୋଲି
ଥରକୁ ଥର କରିଛି ପ୍ରତ୍ୟାଖ୍ୟାନ ।
ଯୋଗ୍ୟ ମୋତେ କରିଛ ଧୀରେ ଧୀରେ,
ସମର୍ପିବାକୁ ଜୀବନ ମୋର
ତମରି ପଦ ତଳେ,
ଯୋଗ୍ୟ ମୋତେ
କରିଛ ଧୀରେ ଧୀରେ ।

ମୂଳଗୀତାଞ୍ଜଳି - ୨



## ୧୫

ତୁମରି ଗୀତ ଗାଇବା ପାଇଁ
ରହିଛି ମୁହିଁ ଏଥି,
ବିଶ୍ୱସଭା ଭବନେ ଥାନ -
ଦିଅ ଜଗତ ପତି ।
ସଂସାରର କର୍ମମୟ ଜୀବନେ କେବେ ମୁହିଁ -
ଲାଗିନି କାମେ, ରହିଛି ଖାଲି ମୁହଁକୁ ତୁମ ଚାହିଁ ।
ବିତାଏ, ତୋଳି ତୁମର ଗୀତ ସ୍ୱର,
ଅପରକାମ ନାହିଁଟି କିଛି ମୋର ।

ନିରବ ନିଶି ମନ୍ଦିରେ ହେ !
ତମରି ଆରାଧନା -
କରିବା ପାଇଁ, ଗାଇବି ତହିଁ
କରନି ମୋତେ ମନା ।

ପ୍ରଭାତେ ଯେବେ ଆକାଶ ଭରି
ଉଠିବ ବାଜି,
ତମରି ସେଇ ସ୍ୱର୍ଣ୍ଣବୀଣା ସ୍ୱର,
ଯେପରି ପ୍ରଭୁ ! କରିବ ନାହିଁ ଦୂର ।

ସମ୍ମୁଖରେ ହୋଇବି ଛିଡ଼ା
ଗାଇବି ତୁମ ଗାନ,
ଏତିକି ଦେଇ ଆଦେଶ ପ୍ରଭୁ !
ରଖହେ ମୋର ମାନ ।
ମୁଁ, ଗାଏ ତୁମରି ଗାନ ।

ମୂଳଗୀତାଞ୍ଜଳି - ୩୧



## ୧୬

ବର୍ଣ୍ଣମୟୀ ପୃଥିବୀ ଏଇ ଉତ୍ସବରେ ଭରା,
ମିଳିଛି ମୋତେ ନିମନ୍ତ୍ରଣ, ମୁଁ ଯୋଗଦେବିପରା ।
ବ୍ୟାକୁଳ ମୋର ମନ,
ଜୀବନ ମୋର ଧନ୍ୟ ।
ଦେଇଛ ମୋତେ ଆଶିଷ ପ୍ରଭୁ !
ଖୋଲିଛି ମୁହିଁ ଆଖି,
ବିଶ୍ୱରୂପେ ଯାଇଛି ତାହା ଲାଖି ।
ଶ୍ରବଣ ପଥେ ଶୁଣିଛି କେତେ ଗାନ -
ସେ ମଧୁମୟ ତାନ,
ପ୍ରଭୁ ! ସବୁତ ତୁମ ଦାନ ।

ଧରିଛିହାତେ ଜୀବନ ବୀଣା ଗାଇବି ବୋଲି ସ୍ୱରେ,
ପାରିବି କି ନା, ହାରିବି ମୁହିଁ,
ତଥାପି ପ୍ରଭୁ ! ଧରିଛି ସାହସରେ ।
ବାଉଛି ମୋର ବୀଣା,
ଜାଣେନା ପ୍ରଭୁ ! ହେବକି ନାହିଁ ତାହା-
ପରାଣ ଛୁଆଁ, ହୃଦୟ ମନ ଜିଣା ।।
ସମୟ କ'ଣ ହୋଇନି ପ୍ରଭୁ ?
ଫେରିବା ପାଇଁ ପବିତ୍ରତୁମ ପୁରେ,
ଶ୍ରୀମୁଖ ତବ କରିବି ଦରଶନ,
ଚରଣେ ତୁମ ପ୍ରଣତି ବାଢ଼ି-
ଅରପିଦେବି, ମୋର ଏ ତନୁ ମନ ।



## ୧୭

ବସିଛି ଚାହିଁ, ଆସୁନି କାହିଁ
ମୁଁ ଧରାଦେବି ପ୍ରେମର ହାତେ ହସି,
ବିଳମ୍ବ କେତେ ହେଲାଣି ପ୍ରଭୁ !
ସତେ ବୋଲି ମୁଁ ବହୁ ଦୋଷରେ ଦୋଷୀ ।

ବିଧିର ବିଧି ବନ୍ଧନହେ !
ଆସଇ ଯଦି ବାନ୍ଧିବାକୁ ମୋତେ,
ଘୁଞ୍ଚିଯାଏ ପଛକୁ ମୁ ହିଁ ଭୟରେ ଥରି
ବିକଳ ହୋଇ କେତେ ।
ସେଇଥିପାଇଁ ମାଗୁଛି, ମନ ଭରା-
ଶାସ୍ତି ଯାହା ଦେବାର ଦିଅ,
ହରଷେ ପ୍ରେମ ହାତରେ ଦେବି ଧରା ।

ଏ ନୁହେଁ ମିଥ୍ୟା, ଜଗତ ମୋତେ ନିନ୍ଦାକରୁ ଛଳେ
ସକଳ ନିନ୍ଦା ଶିରେ ମୁଁ ବହି ରହିବି ଏକା ତଳେ ।
ସରିଲା ହାଟ, ମୋ ବିକା କିଣା
ଫେରିବି ଏବେ ଘର,
ଯିବାକୁ ମୋତେ ହେବରେ ଏକା
ଦୀର୍ଘ ପଥ ମୋର ।
ଯା'ଡାକେ ମୁହିଁ, ଯା'ସାଥେ ଆସିଥିଲି,
ଗଲିନି ବୋଲି, ଯେ ଅଭିମାନେ -
ଗଲେଣି ଏବେ ଚାଲି ।
ଚାଲିବି ଏକା ପରା,
ହରଷେ ପ୍ରେମହାତରେ ଦେବି ଧରା ।

ମୂଳଗୀତାଞ୍ଜଳି - ୧୫୧



## ୧୮

ତୁହାକୁ ତୁହା ଆସଇ ମେଘ
ଅନ୍ଧାର ଆସେ ଘୋଟି
କାହିଁକି ଏକା ବସାଇ ଅଛ
ଦୁଆରେ ମୋତେ ଏଥି ?
ରହିଛି ନିତି ଲୋକର ମେଳେ
ବ୍ୟସ୍ତ ଥାଏ କଞ୍ଜାଳରେ,
ଆଜିଯେ ଏଇ ଅଛି ମୁଁ ବସି
ତୁମରି ଆଶ୍ୱାସେ
କାହିଁକି ଏକା ବସାଇ ଅଛ
ଆଜି ଏ ଦ୍ୱାର ପାଶେ !

ଯଦି ହେ ତୁମେ ନ ଦେବ ଦେଖା
ମୋ ଠାରେ କରି ହେଳା,
କିପରି କୁହ କାଟିବି ଏକା
ଏଇ ବାଦଲ-ବେଳା ?
ଆକାଶେ ଦୂର ଅନ୍ଧକାରେ
ନିର୍ନିମେଷ ନୟନ ତୋଳି,
ବିକଳେ କାନ୍ଦେ ପରାଣ ମୋର
ଅଶାନ୍ତ ଏ ପବନେ ଘୂରି।
ନାହାନ୍ତି କେହି ସାଥୀ,
ପ୍ରଭୁ ! କାହିଁକି ଏକା ବସାଇ ଅଛ ଏଥି ?

ମୂଳଗୀତାଞ୍ଜଳି - ୧୬



## ୧୯

ମୋ ସହିତ ତୁମେ ପ୍ରଭୁ !
ନ କହିଲେ କଥା,
ସହିବି, ଅନ୍ତରେ ଭରି ତବ ନିରବତା।
ରହିବି ନିଷ୍ଚଳ ଯଥା ରାତ୍ରି ତାରକିତ,
ହୋଇ ବିନିଦ୍ରିତ ।

ନିଷ୍ଚୟ ଆସିବ ଦିନେ ଜୀବନେ ପ୍ରଭାତ
ଅନ୍ଧକାର କରି ପ୍ରତିହତ,
ସୁନେଲି ପ୍ରବାହ ତୋଳି ତୁମଆଲୋକର
ଆକାଶର ବୁକୁଚିରି-
ଢ଼ାଳି ଦେବ ତୁମ କଣ୍ଠ ସଙ୍ଗୀତ ନିର୍ଝର।

ତୁମ୍ଭ ଧ୍ୱନିର ସ୍ୱରୂପେ
ମୋ ନୀଡ଼ର ପକ୍ଷୀଗଣ-
ଡେଣା ତୋଳି ଉଡ଼ିଯିବେ
ସଙ୍ଗୀତ ରୂପେ ।
ସେ ମଧୁର ସ୍ୱରେ,
ଫୁଟିବ ଅମାପ ପୁଷ୍ପ
ମୋ ମନର ଅରଣ୍ୟ କୁଞ୍ଜରେ
ପ୍ରଭୁ !
ମୋ ସହିତ ନ କହିଲେ କଥା,
ସହିବି ଅନ୍ତରେ ଭରି ତବ ନିରବତା ।।



## ୨୦

ପଦ୍ମ ଯେଦିନ ହୋଇଲା ତଡ଼ାଗେ ପ୍ରସ୍ଫୁଟିତ
ମନ ମୋର ଥିଲା ମୁଗ୍ଧ ଉଦ୍ଭ୍ରାନ୍ତ ଉଚ୍ଚାଟିତ ।
ଚଳ ଚଞ୍ଚଳ ଥିଲା ଭାରି,
ତୋଳି ପାରିଲିନି ଫୁଲଟିଏ ମୁହିଁ
ଫୁଲ ଡାଲା ମୋର ଥିଲା ଖାଲି ।।

ଖେଳିଗଲା ମନେ ବିଷାଦ ରାଗିଣୀ
ହୃଦୟକୁ ଛୁଇଁ ବାର ବାର,
ସପନ ଶେଯରୁ ଆଖି ଖୋଲି ଦେଖେ
ମଉଳିଛି ମନେ ଫୁଲଭାର,
ଦକ୍ଷିଣା ପବନ ଛୁଇଁ ଛୁଇଁ ବହେ ମନତଳେ,
ମଧୁ ଗନ୍ଧରେ ଆମୋଦିତ ମନ କୁତୂହଳେ ।

ବିକଳ ହୁଅଇ ଅନ୍ତର ମୋର ଆବେଗରେ
କେଉଁଠାରୁ ହୁଏ ପ୍ରବାହିତ ମଧୁ ମଳୟରେ ।
ହେବକି ପୂର୍ଣ୍ଣ ପରକାଶ,
ଗ୍ରୀଷ୍ମର ଭରା ଉଚ୍ଛ୍ୱାସ ଝରା ପରିବେଶ ।

ଚମକି ଚାହିଁଲି ଅନ୍ତରେ ମମ, ନିକଟରେ
ମଧୁଉତ୍ସବ ମୁଖରିତ ମୋର ହୃଦୟରେ ।
ଗନ୍ଧଆକୁଳ ସେ ଶୋଭା ସରୋଜ ମୁକୁଳିତ
ଅନ୍ତରତଳେ ଗହନ ଅତଳେ ସୁଶୋଭିତ
ଉତ୍ତାଳ ମୋତେ କରୁଅଛି,
ଶୟନେ ସପନେ ମାୟା ରଚି ।।



## ୨୧

ବାହିବାକୁ ହେବ ମୋର ନାଆ
ସ୍ଫୂର୍ତ୍ତିହୀନ ସମୟଟା,
କଟେ କୂଳେ ଆହା !

ବସନ୍ତ ଆସିଲା ନେଇ-
ବୃକ୍ଷେ ବୃକ୍ଷେ ପୁଷ୍ପର ସମ୍ଭାର,
ନେଲାଣି ବିଦାୟ କେଣେ
ସେ ଉଜୁଡ଼ା ଫୁଲ ରୂପଭାର ।
ମଉଳା ଫୁଲର ସେଇ ମଣ୍ଡପ ଉପରେ
ବସିଅଛି ଚାହିଁ ମୁହିଁ, କ୍ଳାନ୍ତ ଅବସରେ ।

ଶୁଭୁଅଛି ନଦୀକୂଳେ
ଲହରୀର ଘନ କୋଳାହଳ,
ତଟ, ବୃକ୍ଷ ବୀଥି ଘେରା
ଲମ୍ବିଅଛି ଛାଇ ତରୁତଳ।
ପବନରେ ହଲୁଛନ୍ତି-
ପଳିତ ସେ ପୀତପତ୍ର-ରାଜି
ତଳେ ପଡ଼ି, ଯାଆନ୍ତି ସେ ହଜି।

ପାରୁନକି ତୁମେ ଅନୁଭବି,
ଘେରିଅଛି ଦେଖୁନ କି ଶୂନ୍ୟତାର ଛବି।
ମନତୁମ ଚାହୁଁନିକି
ଆନନ୍ଦରେ ହେବ ଉଚ୍ଛାଟିତ
ଆସୁଅଛି ଭାସିଦୂରୁ, ସେ ପାରିରୁ
ପ୍ରାଣମୟ ସେ ମଧୁ ସଙ୍ଗୀତ
ଆନନ୍ଦରେ ହେବ ଉଚ୍ଛାଟିତ।



## ୨୨

ଆଜି......
ଶ୍ରାବଣ ଘନ ଗହନ ମୋହେ ବୁଡ଼ି
ରାତ୍ରି ସମ ନିରବେ ଆସ, ଗୋପନେ ତୁମେ
ଚରଣ ଚାରୁ ଚାଳି,
ସକଳ ଦୃଷ୍ଟି ଏଡ଼ି।
ପ୍ରଭାତ ଆଜି ମୁଦିଛି ଆଖି
ପୂବେଇ ବାଆ ଯାଉଛି ଡାକି,
ନିଲୀନ ନୀଳ ଆକାଶେ କିଏ
ଦେଇଛି ବେଗେ ନିବିଡ଼ ମେଘ ଭିଡ଼ି,
ଶ୍ରାବଣ ଘନ ଗହନ ମୋହେ ବୁଡ଼ି।

କୂଜନ ହୀନ କାନନ ଭୂମି
ବନ୍ଦ ସବୁ ଦୁଆର ଆରେ !
ଏକାକୀ କିଏ ପଥିକ ତୁମେ ?
ପଥିକ ହୀନ ଏ ପଥ ଧାରେ !
ହେ ଏକା ସଖା ! ହେ ପ୍ରିୟତମ !
ରହିଛି ଖୋଲା ଏ ଘର ମମ,
ଯାଅନି ଚାଲି ସପନ ସମ-
ଆଡ଼େଇ ହୋଇ ଛାଡ଼ି,
ଶ୍ରାବଣ ଘନ ଗହନ ମୋହେ ବୁଡ଼ି ।।

ମୂଳଗୀତାଞ୍ଜଳି - ୧୮



## ୨୩

ଆଜି, ଏ ଝଡ଼ରାତେ ତୁମର ଅଭିସାର
ବନ୍ଧୁ ତୁମେ ପରାଣ ସଖାମୋର ।
ଆକାଶ କାନ୍ଦେ ହତାଶ ମନ
ନୟନ ମୋର ନିଦ୍ରାହୀନ,
ଦୁଆର ଖୋଲି ହେ ପ୍ରିୟତମ !
ଚାହୁଁଛି ବାର ବାର,
ପରାଣ ସଖା, ବନ୍ଧୁ ଆହେ ମୋର !

ବାହାରେ କିଛି ଦେଖି ମୁଁ
ପାରୁନାହିଁ,
ପାଉନି ସଖା ! ତୁମର ପଥ ମୁହିଁ ।

ସୁଦୂର କେଉଁ ନଦୀର ତୀରେ
ଗହନ କେଉଁ ବନର ଧାରେ,
ଗଭୀର କେଉଁ ଅନ୍ଧକାରେ
ହେଉଛ ତୁମେ ପାର;
ମୋ ପୁରେ ତୁମେ ଆସିବ ବୋଲି
ପରାଣ ସଖା, ବନ୍ଧୁ ଆହେ ମୋର ।
ବନ୍ଧୁ ଆହେ ମୋର ।।



## ୨୪

ଦିବସ ଯଦି ହୋଇଲା ଶେଷ
ପକ୍ଷୀ ଯଦି ନ ତୋଳେ ରାବ ଆଉ,
କ୍ଳାନ୍ତ ସୁରେ ବହେ ନା ଯଦି ବାୟୁ-
ତା' ହେଲେ ସଖା ! ଦିଅହେ ଢ଼ାଙ୍କି ମୋରେ
ନିବିଡ଼ ଘଞ୍ଚ ତିମିର ଘନ ତଳେ ।

ଯେପରି ତୁମେ ନୟନେ ସ୍ୱପ୍ନ ମାଖି
ବୁଜାଇ ଦିଅ ବାଉଳା ନିଦ ଆଖି ।
ଗୋପନେ ଧୀରେ ଧୀରେ-
ଢ଼ାଙ୍କିଦିଅ ଧରଣୀ ଅନ୍ଧକାରେ,
ନିଶିଥେ, ଶତଦଳେ ।
ସେପରି ମୋତେ ଲୁଚାଇ ଦିଅ
ଘନ ତିମିର ତଳେ ।

ଯାତ୍ରାପଥେ ମଝିରେ ଯା'ର ପାଥେୟ ଯାଏ ସରି
ବ୍ୟଥାର ଭାର ଉଠଇଯା'ର ଫୁଟି,
ବସନ ଭୂଷା ଯା' ଧୂଳି ମଖା ମଳିନ ଅପମାନେ
ଶକତି ଯା'ର ଯାଇଛି ସଖା ତୁଟି ।
ଢ଼ାଙ୍କି ଦିଅ ସକଳ କ୍ଷତ ବ୍ୟଥା,
ଦେଇ ହେ ତାକୁ କରୁଣା ଘନ ଗଭୀର ଗୋପନତା ।
କରହେ ପ୍ରଭୁ ଦୂର !
ଯେତେ ତା' ଲଜ୍ଜା ଭାର ।
ଅମୃତ ସେ ଅନ୍ଧକାରେ ବୁଡ଼ାଅ ପୁଣ୍ୟୋଦକେ
ଫୁଟାଅ ତାକୁ ନବୀନ ଉଷାଲୋକେ ।
ପ୍ରଭୁ ! ନବୀନ ଉଷାଲୋକେ ।।

ମୂଳଗୀତାଞ୍ଜଳି - ୧୫୭



## ୨୫

କ୍ଲାନ୍ତ ଯେବେ ପରାଣ ମୋର ପ୍ରଭୁ !
ମଧୁର ଘନ ରାତ୍ରିତଳେ
ଯାଏ ମୁଁ ଭୁଲି ସବୁ,
ପ୍ରତ୍ୟୟର ଶେଯଟି ଦିଏ ପାରି,
ଶୟନ କରେ, ଶାନ୍ତିସୁଧା ସନ୍ତୋଷ ମୁଁ ଭରି ।

ବାଧ୍ୟ ମୁହିଁ କରିବି ନାହିଁ
ତମରି ପୂଜା ପାଇଁ,
ଅନିଚ୍ଛାରେ ଅନ୍ତର ମୋ'
ନ ଯାଉ କେବେ ଧାଇଁ ।

ହେ ସଖା ! ଘନ ଅନ୍ଧକାର
ଓଢ଼ଣା ଦିଅ ଟାଣି
ଘୋଡ଼ାଇ ଦିଅ ଦିବସ ମୁଖ,
କ୍ଳାନ୍ତ ଆଖି ଚୁମି ।
ନବୀନ ସଦ୍ୟ ପ୍ରକାଶେ ଭରିବାକୁ
ନୂତନ ଜାଗରଣରେ ମନେ
ଆନନ୍ଦର, ପ୍ଲାବନ ତୋଳିବାକୁ ।



## ୨୬

ସିଏ ଆସି ପାଶେ ବସିଥିଲେ
ହତ ଭାଗିନୀ ମୁଁ ଉଠିଲିନି,
କି ନିଦରେ ସତେ ଶୋଇଥିଲି,
ଦରଶନ ତାଙ୍କ ପାଇଲିନି ।

ଆସିଥିଲେ ସିଏ ଘନ ରାତେ
ବାଉଥିଲେ ବୀଣା ଧରି ହାତେ,
ସପନେ ଶୁଭିଲା ମଧୁର ରାଗିଣୀ ପ୍ରତିଧ୍ୱନି ।
ସିଏ ଆସି ପାଶେ,
ଦରଶନ ତାଙ୍କ ପାଇଲିନି ।।

ଚମକି ଚାହିଁଲି ଦକ୍ଷିଣା ପବନ ବହୁଅଛି
ଅନ୍ଧାର ଭରି ଗନ୍ଧ ତାହାର ଉଛୁଳୁଛି ।
ପାଗଳ କରୁଚି ମନ ମୋର,
ବ୍ୟର୍ଥ ହୋଇଲା ଭରା ରଜନୀରେ
ଅଭିସାର ତାଙ୍କ ଅଭିସାର ।

ନିକଟରେ ପାଇ, କେଡ଼େ ନିକଟରୁ ହରାଇଲି
ପାଖେ ପାଖେ ଥାଇ, ଦରଶନ ତାଙ୍କ ନପାଇଲି ।
ଅଭାଗିନୀ କେଡ଼େ ଅଭାଗିନୀ
ବୁକୁରେ ତାଙ୍କର ମାଳାର ପରଶ
ମିଳିବାକୁ ଥାଇ, ମିଳିଲାନି,
ଅଭାଗିନୀ ମୁଁ ତ ଅଭାଗିନୀ ।

ମୂଳଗୀତାଞ୍ଜଳି - ୬୧



## ୨୭

ପ୍ରଦୀପ କାହିଁ, ପ୍ରଦୀପ କାହିଁ ଜଳେ ?
ଜାଳରେ ତାକୁ ଜାଳ, ବିରହାନଳେ ।
ରହିଛି ଦୀପ ନାହିଁ ତା' ଶିଖା,
ଏହାକି ଥିଲା ଭାଲେ ତା' ଲେଖା ?
ଏଥିରୁ ବଳି ମରଣ କେଡ଼େ ଭଲ,
ବିରହାନଳେ ପ୍ରଦୀପଟିକୁ ଜାଳ ।

ବେଦନା-ଦୂତୀ ଗାଉଛି, ଆରେ ପ୍ରାଣ !
ତୁମରି ପାଇଁ ସଜାଗ ଭଗବାନ ।
ନିଶୀଥେ ଘନ ଅନ୍ଧକାରେ
ଡାକନ୍ତି ସିଏ ପ୍ରେମାଭିସାରେ,
ଦୁଃଖ ଦେଇ ରଖନ୍ତି ତୋର ମାନ,
ତୁମରି ପାଇଁ ସଜାଗ ଭଗବାନ ।

ଆକାଶ ବୁକୁ ରହିଛି ମେଘେ ଘେରି
ବରଷା ଜଳ ପଡ଼ଇ ଝରି ଝରି ।
ଏ ଘୋର ରାତେ କାହାର ଲାଗି
ପରାଣ ମୋର ଉଠଇ ଜାଗି,
ଲାଗଇ କିଆଁ ସହେବା ଯାଏ ମରି ?
ବରଷା ଜଳ ପଡ଼ଇ ଝରି ଝରି ।

ବିଜୁଳି ରେଖା କ୍ଷଣିକ ଆଭା ତୋଳେ
ଆଖିରେ ଘନ ଅନ୍ଧକାର ବୋଳେ ।
ଜାଣିନି କାହିଁ ଅନେକ ଦୂରେ
ବାଜୁଛି ଗାନ ଗଭୀର ସ୍ୱରେ,
ସକଳ ପ୍ରାଣ ଟାଣୁଛି ସେଇ ଦିଗେ
ବାଜୁଛି ଗାନ ନବୀନ ସୁର ରାଗେ ।
ପ୍ରଦୀପ କାହିଁ...ପ୍ରଦୀପ କାହିଁ ଜଳେ ?
ଜାଳରେ ତାକୁ ଜାଳ ବିରହା ନଳେ ।
ଡାକୁଛି ମେଘ ବତାସ ଆସେ ମାଡ଼ି
ହେବନି ଯାଇ, ସମୟ ଗଲେ ଚାଲି,
ନିବିଡ଼ ରାତି ଅନ୍ଧକାର ଘନ,
ପ୍ରଣୟ ଦୀପେ ଆଲୋକି ଉଠୁ ପ୍ରାଣ ।

ପ୍ରଦୀପ କାହିଁ ପ୍ରଦୀପ କାହିଁ ଜଳେ
ଜାଳରେ ତାକୁ ଜାଳ ବିରହାନଳେ ।।

ମୂଳଗୀତାଞ୍ଜଳି - ୧୭



## ୨୮

ବାଧା ବନ୍ଧନେ ଘେରି ରହିଅଛି ମୁହିଁ
ଏଡ଼ାଇବାକୁ ମୁଁ ଚେଷ୍ଟା କଲେବି
ତାକୁ ଏଡ଼ି ପାରେ ନାହିଁ ।
ମୁକତି ପାଇଁ ମୋ ସତତ ବ୍ୟାକୁଳ ମନ
କରିଲେ ଆଶା ମୁଁ ଘୋଟଇ ଲଜ୍ଜା ଘନ ।

ଜାଣିଛି ହେ ତୁମେ, ଏ ଜୀବନେ ଶ୍ରେୟମୋର
ନାହିଁ ମୋର କିଛି ତମଠୁ ଅଧିକତର,
କାହିଁ ସାଇତିବି, ନାହିଁ ମୋ' ଘରଟି ଖାଲି,
ସେମହାଧନକୁ କାହିଁ ମୁଁ ରଖିବି, ହେଉଅଛି ଖାଲିଭାଳି ।।
ଧନରେ ମୁଁ ବାଇ, ତିଳେ ବି ତୁଟୁନି ଲୋଭ,
ତୁମରି ଧନରୁ ବଞ୍ଚିତ ବୋଲି,
ମନରେ ଜାଗେ ମୋ କ୍ଷୋଭ
ତମକୁ ସିନା ମୁଁ, ଆବୋରି ଅଛି ହେ ପ୍ରିୟ ।
ମୃତ୍ୟୁ ଧୂଳିରେ ଢ଼ଙ୍କା ପରାଣ ଦେହ ।
ଘୃଣାରେ ଦୂରକୁ ଯେତେ ଅବା ଦେଲେ ଠେଲି
ତଥାପି ତୁଟଇ ନାହିଁ ତାର ପ୍ରୀତି ଡୋରି ।

ଜୀବନର କେତେ ଋଣ କେତେ ବିଫଳତା
ଅପମାନ କେତେ, ଅଟେ ମୁଁ ଲଜ୍ଜାହତା,
ମୋ ଶୁଭ ମନାସି ଡାକିବି ବୋଲି ମୁଁ ଭାବେ
ମନରେ ଅପାର ଲଜ୍ଜା ଓ ଭୟ ଜାଗେ ।
ବାଧା ବନ୍ଧନେ ପରାଣ ଅଛି ମୋ ବେଢ଼ି
ଚେଷ୍ଟା କଲେବି ଏଡ଼ାଇବାକୁ ମୁଁ,
ପାରେନା ତାହାକୁ ଏଡ଼ି ।।

ମୂଳଗୀତାଞ୍ଜଳି - ୧୪୫

●

# ୨୯

ଯଶ ଗଉରବ ମାନ ସନମାନ ଦଉଲତ
ଯା' ପାଖେ ଗଢ଼ିଛି ଅହଂକାରର ଇମାରତ ।
ତା' ଠାରୁ ଅଛି ମୁଁ ବହୁଦୂରେ,
ନିରବେ ବିଜପେ ନିର୍ଜନେ ସିଏ ଅନ୍ଧକାରେ ।
ମୁଁ ସଦା ବ୍ୟସ୍ତ ଥାଏ ଖଟି
ଗଢ଼ିବାରେ ମୋର ବଡ଼ ପଣିଆର ପାଚିରିଟି ।

ଯେତେଯେତେ ଏହା ଉପରକୁ ଉଠେ
ଅନ୍ଧାର କରେ ଭିତରକୁ,
ଲୁଚେତା ଛାଇରେ, 'ମୋ' ନିଜପଣିଆ'
ଦେଖାଯାଏ ନାହିଁ ବାହାରକୁ ।
ବଡ଼ ପଣିଆର ଏ ପାଚେରି ପାଇଁ
ଗର୍ବିତ ମୁହିଁ ଅବିରତ,
ଛିଦ୍ର ପଥ ମୁଁ ବୁଜି ଦିଏ ଲାଗି
କରିବାକୁ ନାଁ ସୁରକ୍ଷିତ ।
ବାଲି ଚୂନ ପାଣି ଦ୍ରବଣରେ,
ଲେପି ଦେଇ ତହିଁ ଟାଂଣ କରେ ମୁଁ ଯତନରେ ।
ମୋ ଶ୍ରମ ସାଧନା ଯେତେ ଢ଼ାଳିଦିଏ
ଉଚ୍ଚ କରିବାକୁ ପାଚେରି ରେ,
ସେତିକି ମୁଁ ତଳେ ନୀଚ ହୋଇ ଯାଏ
ଲୁଚିଯାଏ ନିଜେ ତା' ଛାଇରେ ।
ଉଚ୍ଚରେ ନୀଚତାଥାଏ ଏତେ ।
ନିଜକୁ ମଣିଷ ଦେଖି ପାରେନାହିଁ ନିଜେସତେ ।



## ୩୦

ସଙ୍କେତପଥେ ଚୁପି ଚୁପି ମୁହିଁ
ଚାଲେ ଏକା,
ଆସେ ପଛେ କିଏ ଅନ୍ଧାରେ
ପାଏ ନାହିଁ ଦେଖା ।
ଏପାଖେ ସେ ପାଖେ ବାଟ ଭାଙ୍ଗି
ଚାଲେ ଚର ଚରେ
ତଥାପି ଗୋପନେ ପଛେ ପଛେ ସିଏ
ପିଛା କରେ ।
ଦୃପ୍ତ ତାହାର ଗରିମା, ଊର୍ଦ୍ଧ୍ୱେ ଉଠାଏ
ଧରାରୁ ଧୂଳିଝଡ଼ ।
ତା' ସ୍ୱର ଝଙ୍କାରେ ଝଂକୃତ ହୁଏ
ସ୍ୱର ମୋର ।
ତଥାପି ପାରେନା ଦେଖି ତାକୁ,
ରହିଥାଏ ଲାଖି ମୋର ମନ ଆଉ ଶରୀରକୁ ।

ପରମ ଭାଗ୍ୟ, ଏତେଦିନେ ମିଳିଗଲା ଦେଖା
'ଆତ୍ମା' ପରା ମୋ, ସିଏ ପରା ମୋର ପ୍ରାଣ-ସଖା ।
ମୋ ସାଥେ ଯିବାକୁ, ତମ ଦୁଆରକୁ
ସଙ୍କୋଚ ତା'ର ତିଳେ ନାହିଁ,
ତା' ସାଥେ ଯିବାକୁ ସମ୍ମୁଖେ ଖାଲି -
ଯାଏ ନଇଁ ମୁହିଁ, ଯାଏ ନଇଁ ।
ସଙ୍କୋଚ ତା'ର ତିଳେ ନାହିଁ ।।



# ୩୧

"କହିବକି ତୁମେ ବନ୍ଦି !
କିଏ ସେହି କହ, ରଖିଛି ତମକୁ ଛନ୍ଦି ?"
"ସିଏ ପରା ପ୍ରଭୁ ମୋର ।
ହାତେ ରଖିଛନ୍ତି ମମ ବନ୍ଧନ ଡୋର ।"

"ଭାବୁଥିଲି ଦିନେ, କ୍ଷମତା ଓ ଧନେ
ଅସମ୍ଭବକୁ ସମ୍ଭବ ଦେବି କରି,
ସଂସାର ଯାକ ଯେତେ ଧନ ଅଛି,
ଆନନ୍ଦ ଭରେ ମୋ ଅମାରେ ଦେବି ଭରି ।

ଦିନେ ଶୋଇଥିଲି ସୁପ୍ତି ଆବେଶେ
ପ୍ରଭୁଙ୍କ ଶଯ୍ୟା ପରେ,
ଜାଗ୍ରତେ ଦେଖେ, ବନ୍ଦୀ ସାଜିଛି
ମୋ ନିଜ କୁବେର ପୁରେ ।

କହିକି ପାରିବ, "ଆହେ କାରାବାସୀ ଭାଇ !
ଅଛିଣ୍ଡା ଏଇ ଶୃଙ୍ଖଳଟିକୁ
କେ' ଗଢ଼ିଛି ତୁମ ପାଇଁ ?"

ତୁମର ଏ ଗୂଢ଼ ପ୍ରଶ୍ନ ପାଇଁକି
ଉତ୍ତର କିସ ମୋର
ମୁଁ ପରା ଅଟଇ ନିଜ ବନ୍ଧନ
ନିଜେ ମୁଁ କର୍ମକାର ।

ଅତି ଯତ୍ନରେ ଶୃଙ୍ଖଳଟିକୁ
ଗଢ଼ିଥିଲି ପରା ମୁହିଁ,
ଭାବିଥିଲି ପରା ସାରା ବିଶ୍ୱକୁ
ବନ୍ଦି କରିବା ପାଇଁ ।
ସ୍ୱପ୍ନ ମୁଁ ଦେଖୁଥିଲି,
ନିଜକୁ ମୁଁ ବଳେ, କାରାବନ୍ଧନୁ
ମୁକ୍ତ, ରଖିବି ବୋଲି ।

ଶକ୍ତ ଶିକୁଳି ଗଢ଼ିବାରେ ମୁହିଁ
ଲାଗିଥିଲି ଦିନରାତି
ତରଳାଉଥିଲି ଲୁହା ଖଣ୍ଡକୁ
ଜଳାଇ ତୀକ୍ଷ୍ଣ ଭାତି ।
କରୁଥିଲି ଟାଣ ଶକ୍ତ ହାତୁଡ଼ି ମାଡ଼େ,
ଶୃଙ୍ଖଳଟିକୁ କେଡ଼େ ଆନନ୍ଦେ ଗଢ଼େ ।
ବହୁ ଯତନରେ ଶୃଙ୍ଖଳ ଗୋଟି
ଗଢ଼ାହେଲା ମୋର ଶେଷ
କବଳିତ କଲା ବନ୍ଧନେ ମୋତେ
ସେଇ ଶୃଙ୍ଖଳ ପାଶ ।
ଏଇ ମୋ ଭାଗ୍ୟବଳ,
ଭୋଗୁଛି କର୍ମ ଫଳ ।।



# ୩୨

ଅନ୍ତର ଭରି ଭଲପାଏ ଯିଏ ମୋତେ
ପ୍ରାଣ ବିନିମୟେ ବିପଦ ଆପଦୁ -
ରକ୍ଷା କରେ ସେ କେତେ ।
ଆହେ ଦୟାମୟ ! ତୁମର ହୃଦୟ ଅଟଇ ସର୍ବୋତ୍ତମ
ଅମାପ ଦୁଃଖ ବିପଦରେ ପ୍ରଭୁ !
ରକ୍ଷା କରତା ମମ ।
ତୁମେ ମୋ ମୁକତି ଦାତା,
ଆହେ ଜଗତର ପିତା !

ପ୍ରିୟଜନେ ମୁହିଁ ଭୁଲିଗଲେ ଅବା
ସେମାନେ ଭୁଲନ୍ତି ନାହିଁ,
ସାଥୀହରା କେବେ କରନ୍ତିନି ମୋତେ
ଛାଡ଼ନ୍ତିନି ଏକା କାହିଁ ।
ଦିନ ପରେ ଦିନ ବିତିଲାଣି କେତେ ସଖା !
ଆଜିଯାଏ କେବେ ମିଳିଲାନି ତୁମ ଦେଖା ।

ତୁମକୁ ମୁଁ ଯଦି ଡାକିନି ଆକୁଳେ କେବେ
ହୃଦୟେ ତୁମକୁ ଆସନ ଦେଇନି ଯେବେ,
ଅଯାଚିତ ପ୍ରେମ କରୁଣା ଦେଇଛ ଢ଼ାଳି,
ବଞ୍ଚିତ ମୋତେ କରିନାହଁ ପ୍ରଭୁ !
ତୁମ ପଦେ ଦେଇ ଠେଲି ।
ଶ୍ରଦ୍ଧାରେ ଚାହିଁଛ ମୋ ପ୍ରେମ ପାଇବ ବୋଲି ।



## ୩୩

ସେ ଆସିଥିଲେ ଦିନେ ମୋ ଘରେ
ଏକଲା ଦିନ ବେଳେ
କହିଲେ ମୋତେ, "ରହିବି ଏଥି
ଟିକିଏ ଆନ ଦେଲେ ।
ଦେବତା ଉପାସନାରେ ନିତି
ମୁଁ ହେବି ତୁମ ସାଥୀ
ସରିଲେ ପୂଜା, ମୁଁ ହେବି ତୋଷ
ପ୍ରସାଦେ ହାତ ପାତି ।

ଏପରି ସିଏ ଦରିଦ୍ର ହୀନ
ମଳିନ ବେଶେ ଆସି
ରହିଲେ ଘର କୋଣରେ ମୋର
ଆନନ୍ଦେ ହସି ହସି ।
ବସିଲେ ସିଏ ଆସନେ
ଶାନ୍ତ ନମ୍ର ରୂପ ଧରି,
ରାତିରେ ଦିନେ ଅନ୍ଧକାରେ
ସେ ଗଲେ ଅପସରି ।
ଉଗ୍ର ରୂପେ ପ୍ରବେଶ କଲେ
ମନ୍ଦିରରେ ମୋର,
ମୋ ଦେବାସନୁ ଉଠାଇ ନେଲେ
ଲୋଭରେ ପୂଜା ଥାଳ ।
ମୋ ପୂଜା ନଇବେଦ୍ୟ,
ବାଡ଼ି ଯା' ଥିଲି ସଦ୍ୟ ।।

ମୂଳ ଗୀତାଞ୍ଜଳି - ୮୦



## ୩୪

ସାମାନ୍ୟ କିଛି, ଦେଲେ ଦିଅ ମୋତେ ପ୍ରଭୁ !
ନିଃସ୍ୱ ଜୀବନେ ତୁମକୁ ମୁଁ ମଣେ ସବୁ,
ତୁମେ ମୋ ପରାଣ ସାଇଁ
ତମପଦେ ପ୍ରଭୁ ! ଆଉ କିଛି ମାଗୁନାହିଁ ।।
ତୁମକୁ ଦେଖେ ମୁଁ ପ୍ରଭୁ ! ମୋର ଚଉପାଶେ
ସବୁ ଇଚ୍ଛା ମଧ୍ୟେ ଏକଇ ଇଚ୍ଛା ଶେଷେ
ତୁମରି ପ୍ରେମରେ ଜାଗି ରହି ଦିବା ନିଶି
ସକଳ ମଧ୍ୟେ ତୁମ ସାଥେ  ରହେ ମିଶି ।
ତୁମେଅଟ ମୋର ସବୁ,
ନ ଭୁଲେ ମୁଁ ସଖା ! ତୁମେ ପରା ମୋର ପ୍ରଭୁ ।

ମୋହାତେ ନରହୁ ଏମିତି ବା ଆବରଣ
ଢ଼ାଙ୍କି ଦେବହେ ! ଶ୍ରୀମୁଖକୁ ପ୍ରଭୁ ତୁମ,
ମୋ ଜୀବନ ହେଉ ତୁମ ଇଚ୍ଛା ଲୀଳା ଭୂଇଁ
ଇଙ୍ଗିତେ ତୁମ, ଚାଳିତ ହୁଏ ହେ ! ମୁହିଁ ।
ହୁଏ ମୁଁ ବନ୍ଧା ତୁମରି ଇଚ୍ଛା ଡୋରେ
ପ୍ରାଣ ସଙ୍ଗୀତ ଗାଏ ପ୍ରଭୁ ! ତୁମ ସ୍ୱରେ ।
ଗାଏ ପ୍ରଭୁ ତୁମ ସ୍ୱରେ ।

ମୂଳ ଗୀତାଞ୍ଜଳି - ୧୩୮

●

## ୩୫

ମୋ ଦେଶକୁ ପ୍ରଭୁ ! ଜାଗ୍ରତକର
ଉତ୍‌ଥିତ କର ହେ !
ନିର୍ଭୟ କର, ଶିରକୁ ତାହାର
ଉନ୍ନତ କର ହେ !
ପ୍ରଖରିତ କର ଅବାରିତ କର
ଜ୍ଞାନର ପ୍ରବାହ ହେ !
ଏକତା ସୂତ୍ରେ ଆବଦ୍ଧ କର
ବିଭେଦକୁ ଟାଳି ହେ !

ସ୍ୱାର୍ଥ ପାଚେରି କ୍ଷୁଦ୍ର ନ କରୁ
ବିଶାଳ ବିଶ୍ୱ ହେ !
ଦୀନତାରୁ ତାକୁ ଉର୍ଦ୍ଧ୍ୱେ ଉଠାଅ
ବିପୁଳିତ କରହେ !

ସତ୍ୟ-ଗଭୀର-ଗର୍ଭୁ ଉଚ୍ଛୁଳୁ
ବାଣୀର ତଟିନୀ ହେ !
କଠିନ ସାଧନା ସୁରଭିତ ହେଉ
ସିଦ୍ଧି ବିତରି ହେ ।
ଅଜ୍ଞତା ମରୁବୁକୁଚିରି ଝରୁ
ବିବେକ ଝରଣାହେ !
ହୃଦୟରେ ତା'ର ଝଙ୍କୃତ କର
ନବୀନଭାବନା ହେ !
ଜାଗ୍ରତକର ଉତ୍‌ଥିତ କର ମୋ ଦେଶକୁ ପ୍ରଭୁହେ
ପରାଧୀନତାର ଶୃଙ୍ଖଳ ତୁଟୁ
ସ୍ୱର୍ଗପାଲଟୁ ହେ ।।

●

## ୩୬

ଏତିକି ମୋର ମିନତି ପ୍ରଭୁ ! ଏତିକି ମୋର ଅଳି
ହୃଦୟୁ ମୋର ଦୈନ୍ୟ ତୁମେ ନିଅ ହେ ଅପସରି ।
ଆସିବ ଯାହା ଦୁଃଖ ସୁଖ ଜୀବନେ ଅହରହ,
ସହିବା ପାଇଁ ଶକତି ମାଗେ, କରନାହିଁ ଦୁର୍ବହ ।
ସେତିକି ପ୍ରଭୁ ଶକ୍ତି ଦେବ ବୋଲି,
ତମରିପାଶେ ଏତିକି ମୋର ଅଳି ।।

ହୃଦୟ ହେଉ ଶ୍ରଦ୍ଧାମୟ, ପୀରତି ପରବଶ,
ସେବାରେ ତାହା ଶୋଭିତ ହେଉ, ଛୁଟାଇ ତାର ବାସ
ଶକତି ଦିଅ ଦୁଃଖୀ ଦୁଃଖ, କରିବା ପାଇଁ ଦୂର,
କେବେ ହେଁ ପର ପୀଡ଼ନ ପାଇଁ, ନବଳୁ ମନ ମୋର ।
ନ ତୁଟୁ ବଳ ମନୁ,
ଉଦ୍ଧତ ସେ ଶକତି ପାଶେ ନହୁଏ ନତଜାନୁ ।

ସଂସାରର ଜଞ୍ଜାଳରୁ ଉର୍ଦ୍ଧ୍ୱେ ରହୁ ମନ
ଶକତି ଦିଅ, ଭୁଲେ ମୁଁ ସବୁ ମାନ ଓ ଅଭିମାନ,
ସମର୍ପଣ କରେ ମୁଁ, ପ୍ରଭୁ ! ପରମ ପ୍ରେମଭରେ
ପରମ ପଦେ ଅରପି ଆପଣାରେ ।
ପ୍ରଭୁ !
ଅରପି ଆପଣାରେ ।।



## ୩୭

ମୁ ଭାବିଲି ମୋର ଶକ୍ତି ହୋଇଲା ଶେଷ
ଜୀବନ ଯାତ୍ରା ସରିବାକୁ ଅଛି ଲେଶ ।
କରିବାକୁ ମୋର ଆଉ କିଛି କାମ ନାହିଁ
ସରିଲାଣି ବାଟ, ଆଗକୁ ଯିବି ମୁଁ କାହିଁ ?
ଯାହା ଆଣିଥିଲି ପାଥେୟ ଗଲାଣି ସରି
ସମୟ ଆସିଛି, ବିଶ୍ରାମ ନେବି ବୋଲି -
ନୀରବ ଅନ୍ତରାଳେ,
ଜୀର୍ଣ୍ଣ ଜୀବନ ଛିନ୍ନ ମଳିନ ଶୀର୍ଣ୍ଣ ଏରୂପ ତଳେ ।

କି ଦେଖୁଛି ଆଜି ଅଫୁରନ୍ତ ଏ ଲୀଳା
ଏକି ନବୀନତା ବହଇ ଅନ୍ତଃଶୀଳା ।
ପୁରାତନ ଭାଷା ମରି ଯାଇଛି ମୋ ମୁଖେ
ନବ ଗାନ ରୂପେ ମୂର୍ଚ୍ଛିତ ମୋର ବୁକେ ।
ପୁରାତନ ପଥ ହୋଇ ଯାଇଅଛି ଶେଷ
ଦେଖୁଛି ସେଠାରେ ଉଭା ଏକ ନୂଆ ଦେଶ ।
'ନବାଶ୍ଚର୍ଯ୍ୟ' ରେ ଉଠିଅଛି ତାହା ଭରି,
ନବଜୀବନର ସତେବା ନବୀନ ପୁରୀ ।
ଯାତ୍ରା ହୋଇଛି ଶେଷ
ଉଭା ଏକ ନୂଆ ଦେଶ ।।

ମୂଳ ଗୀତାଞ୍ଜଳି - ୧୨୪



## ୩୮

ତୁମକୁ ଖାଲି ଚାହେଁ ମୁଁ ପ୍ରଭୁ !
ତୁମକୁ ଖାଲି ଚାହେଁ,
ତୁମ ନାଁ ଖାଲି ରଟୁ ମୋ ମନ
ଜୀବନେ ଶେଷ ଯାଏ ।
ବାସନା ଯେତେ ଟାଣଇ ମୋର
ମନକୁ ଦିନ ରାତି,
ଶୂନ୍ୟ ସବୁ, ତୁଚ୍ଛ ସବୁ, ମୂଲ୍ୟହୀନ ଅତି ।।

ଅନ୍ଧକାର ଓଢ଼ଣା ତଳେ
ରାତ୍ରି ଥାଏ ଲୟେ
ଆଲୋକର ପ୍ରାର୍ଥନା ସେ
ନୀରବେ କରୁଥାଏ ।
ଅନ୍ତରର ଅତଳ ତଳୁ
ଶୁଭଇ ସେଇ ନାଦ
ତୁମକୁ ଖାଲି ଚାହୁଁଛି ପ୍ରଭୁ !
ତୁମକୁ ଚାହେଁ ହୃଦ ।

ବାତ୍ୟାବହେ ପ୍ରବଳ ବେଗେ
ଅଥିର କରି, ଶାନ୍ତ ପରିବେଶ,
ସେ ପୁଣି କରେ ସନ୍ଧି ଶେଷେ -
ଶାନ୍ତି ସାଥେ, ପ୍ରଳୟ କରି ଶେଷ ।
ସେପରି ପ୍ରଭୁ ! ତୋଳିଛି ମୁହିଁ
ପ୍ରତିବାଦର ସ୍ୱର,
ଅନ୍ତର ମୋ ଅଟଇ ପ୍ରେମାକୁଳ ।
ତୁମକୁ ଚାହେଁ ତୁମକୁ ଚାହେଁ ଖାଲି
କରୁଣା ତୁମ ପାଇବି ଟିକେ ବୋଲି ।।

●

## ୩୯

ଜୀବନ ଯେବେ ଶୁଖି ମୋ'ଯାଏ
ଆସହେ ଧରି, କରୁଣା ବାରିଧାରା,
ମାଧୁରୀ ଯେବେ ମରି ମୋ' ଯାଏ
ଆସହେ ଧରି, ସଙ୍ଗୀତର ସୁରା ।

କରମ ଯେବେ ପ୍ରବଳ ବେଗେ
ଗର୍ଜି ଉଠି, ଢ଼ାଙ୍କେ ଚଉପାଶ,
ହେ ନୀରବ ନାଥ ! ହୃଦୟ ପ୍ରାନ୍ତେ
ଶାନ୍ତ ପଦେ, ଆସହେ ତୁମ୍ଭେ ଆସ ।

ମନକୁ ଯେବେ କୃପଣ କରି -
ଦୀନ ହୀନ କୋଣରେ ପଡ଼ିଥାଏ,
ହେ ଉଦାର ନାଥ ! ଦୁଆର ଖୋଲି -
ଆସହେ ପଶି, ରାଜାର ସମାରୋହେ ।
ବାସନା ଯେବେ, ଧୂଳିର ଧୂମେ
ଅନ୍ଧକରି, ଭୁଲାଏ ଅବୋଧରେ,
ଆହେ ପବିତ୍ର ! ଆହେ ଅନିଦ୍ର !
ଆସ ହେ ରୁଦ୍ର, ପୁଣ୍ୟ ଆଲୋକରେ ।
ଆସହେ ପ୍ରଭୁ ଆସ !
ଧରି ଶାନ୍ତ ବେଶ ।।

ମୂଳଗୀତାଞ୍ଜଳୀ - ୫୮



# ୪୦

ମୋ, ଅନ୍ତର ତାପେ ଜଳିଲାଣି
ବର୍ଷା ଟୋପାଏ ମିଳିଲାନି ।
ଦିଗ୍‌ବଳୟେ ମୋ' ଜୀବନ ଆକାଶେ -
ମେଘୁଆଣି ଛାଇ ଘୋଟିଲାନି,
ମୋ, ଅନ୍ତର ତାପେ ଜଳିଲାଣି ।

କ୍ରୋଧର ଝଞ୍ଜା ଦିଅ ବାହି,
ଆସୁ ଅବା ସିଏ -
ମରଣ ଅନ୍ଧକାର ନେଇ ।
ତା'ବୁକୁରେ ଥରେ ଚମକାଇ ଦେଉ
ବଜ୍ର ବିଜୁଳି ଘନଘନ,
ସାରା ଆକାଶକୁ ଥରାଉ
ତା'ଗୁରୁ-ଗରଜନ ।
ପ୍ରଭୁ ହେ !
ଇଚ୍ଛା ତମର ଯଦି ଏହା
ଅଚିରେ ପୂରଣ କର ତାହା ।

ଯେପରି ହେଲେ ବି କର ତ୍ରାଣ
ଏ ଦହନ ତାପ ଗୀରିଷମ,
ଫେରାଇ ନିଅ ହେ ।
ନିରବିତ ଏଇ ଉତ୍ତାପରେ
ଜ୍ୱାଳାମୟ ଏଇ ନିରିମମ ଜାଳା-ହତାଶାରେ ।
ନୈରାଶ୍ୟ ମନୁ ଯାଉ ଲିଭି
ମନ ଆକାଶରେ ଭାସି ଉଠୁ
ଆଶା ମେଘ ଛବି ।

ଚଉଦିଗେ ଖେଳୁ ଭେଳା ଭେଳା
ତୁମ କରୁଣାର ମେଘମାଳା,
ଆକାଶୁ ତଳକୁ ଆସୁ ନଇଁ,
ମୁହଁ ପୋତି କାନ୍ଦେ ଜନନୀ ଯେପରି କଇଁକଇଁ
କ୍ରୋଧିତ ପିତାର କ୍ରୋଧକୁ ଲିଭାଇ ଦେବା ପାଇଁ ।
ଝରି ଯାଉ ବାରି ସେଇପରି,
ଶୁଷ୍କ ଜୀବନ ଦହନର ଜାଳା ଯାଉ ମରି ।।



## ୪୧

ପ୍ରେମମୟ ! ଆହେ ପ୍ରାଣସଖା !
ଉଭା ହୋଇଥାଅ ତୁମେ ଘନ ଅନ୍ତରାଳେ -
କେହି କେବେ ପାଆନ୍ତିନି ଦେଖା ।
ଚାଲିଥାନ୍ତି ସର୍ବେ ଧୂଳି ଧୂମାୟିତ ପଥେ
ଶ୍ରାନ୍ତ କ୍ଳାନ୍ତ ବିଶ୍ରବ୍ଧ ମୁହୂର୍ତ୍ତେ ।
ବସିଥାଏ ନୀରବେ ମୁଁ ନୈବେଦ୍ୟ ଚଢ଼ାଇ
ମିଳନ ମୁହୂର୍ତ୍ତ କେବେ ଆସିବ ମୋ ପାଇଁ !

ସେ ପଥେ ଯାଆନ୍ତି ଚାଲି ଯେତେକ ପଥିକ
ମୋ ଡ଼ାଲାର ଫୁଲ ସବୁତକ -
ଗୋଟି ଗୋଟି ନେଇଯାନ୍ତି ଶୂନ୍ୟକରି ଡ଼ାଲା,
କିପରି ଗୁନ୍ଥିବି ସଖା ! ମୋ ମିଳନ ମାଳା ?
ସକାଳୁ ମୁଁ ବସିଥାଏ ସଞ୍ଜଯାଏ ପ୍ରତୀକ୍ଷାରେ ତୁମ
ଛାୟା ସିକ୍ତ ସଞ୍ଜେ ହୁଏ ତନ୍ଦ୍ରାଭିଜା ମୁଦ୍ରିତ ନୟନ ।

ଚାହିଁଥାନ୍ତି ଘର ମୁହାଁ ଲୋକେ ମୋତେ
ସସ୍ମିତ ଅଧରେ,
ମୁଁ କିନ୍ତୁ ଶ୍ରଦ୍ଧାରେ ତାଙ୍କୁ
ମୁଖ ଟେକି ନପାରେ, ଲଜ୍ଜାରେ ।
ବସିଥାଏ ଭିକାରୁଣୀ କନ୍ୟା ସମ
ମୁଖେ ଢ଼ାଙ୍କି ମୋ' କାନି ପଣତ,
ମୁହଁ ପୋତେ, ହୋଇ ଲଜ୍ଜାହତ ।।
କିପରି କହିବି ?
"ଆସିବେ ମୋ ପ୍ରାଣ ସଖା ହୃଦୟରମଣି
ତାଙ୍କ ପ୍ରତୀକ୍ଷାରେ ଚାହିଁଅଛି ଚାତକିନୀ ।"
ସମ୍ମୁଖେ ସଜାଇ ଅଛି,
ଅରପିବି ' ଦାରିଦ୍ର୍ୟ ପସରା'
ସ୍ୱାଭିମାନେ ଗୋପନରେ ସାଇତିଛି
ମୋ'ଅନ୍ତରେ ପରା ।

ସବୁଜ ପ୍ରାନ୍ତରେ ବସି, ମୁଁ ଚାହିଁଛି ନିସୀମ ଆକାଶେ
ଦେଖିବାକୁ ତୁମ ଅଭିସାର ସମାରୋହ,
ସ୍ୱପ୍ନାୟିତ ମୁଗ୍ଧ ପରିବେଶେ ।
ସୁନେଲି ପତାକା ଟାଣି ରଥେ ବସି -
ଆସୁଥିବ ହେ ହୃଦୟେଶ୍ୱର !
ଆକାଶଟା ହସୁଥିବ ରୋଶନିରେ
ତୋଳି ଏକ ଜ୍ୟୋତିର ନିର୍ଝର ।

ସେମାନେ ଅନାଇଥିବେ
ହତବାକେ ବିସ୍ଫାରିତ ନେତ୍ରେ,
ଦେଖୁଥିବେ, ଓହ୍ଲାଇ ଆସୁଛ ତୁମେ
ଏଇ ଧୂଳି ବୁକେ ।
ହସିହସି ମୋ ଆଡକୁ ଚାହିଁ
ବୁକୁରେ ଜଡ଼ାଇ -
ନେଇଯିବେ, ଟେକି ତାଙ୍କ କୋଳେ,
ଭିକାରୁଣୀ ଏ ବାଳିକା ବଧୂକୁ ବିହ୍ୱଳେ ।

ଥରୁଥିବ ସେ ସମ୍ଭ୍ରମେ, ସ୍ୱାଭିମାନେ ଯଥା
ଥରୁଥାଏ, ବୈଶାଖର ପବନରେ
ବାତାହତା ସେ ଲୋଟଣି ଲତା ।
ଅତିକ୍ରାନ୍ତ -ହେଲାଣି ସମୟ ସଖା !
ରଥର ଘର୍ଘରନାଦ ଶୁଭୁନାହିଁ ନଛୁଏଁ ବଳୟ,
ପଥେ ମୁଁ ଦେଖୁଛି ନିତି -
ଅସୁମାର କେତେ ପଟୁଆର
ସୌନ୍ଦର୍ଯ୍ୟ ଓ ଐଶ୍ୱର୍ଯ୍ୟର ମତ୍ତ କୋଳାହଳ ।
ତୁମେ କିନ୍ତୁ ଦିଶୁ ନାହଁ କାହିଁ,
ସେଇପରି ନୀରବରେ ସମସ୍ତଙ୍କ ଅନ୍ତରାଳେ
ଅଛି ଛିଡ଼ା ହୋଇ ?
ଏହା କ'ଣ ଭାଗ୍ୟେ ମୋର ଲେଖା
ବିକଳରେ କାନ୍ଦି କାନ୍ଦି ବ୍ୟଥିତ ହୃଦୟେ,
ବୃଥା ହେବ ମୋ ଦୀର୍ଘ ପ୍ରତୀକ୍ଷା ?



# ୪୨

କଥା ପରା ଥିଲା ଏ ତରୀରେ ବସି
ତୁମେ ଆଉ ମୁଁ ଯିବା ଭାସି ଭାସି
ଆଉ କେ ନଥିବେ ସାଥୀ,
କେହି ନ ଜାଣିବେ କାହିଁ ଆମେ ଯିବା
ତୀର୍ଥ ଭ୍ରମଣେ କେ ଦେଶ ଭ୍ରମିବା
କେତେ ଦିନ ଯିବ ବିତି !

କୂଳହରା ସେଇ ସାଗରରେ ଏକା
ଶୁଣାଇବି ଗୀତ ତୁମ କାନେ ସଖା !
ନୀରବେ ଶୁଣିବ ହସି,
ଢେଉ ସମ ହେବ ବନ୍ଧନ-ହରା
ନଥିବ ସେଥିରେ ଶବ୍ଦର କାରା,
ପ୍ରାଣ ଝଙ୍କାରେ ହୃଦୟକୁ ଦେବିତୋଷି ।

ସେ ସମୟ କ'ଣ ହୋଇନାହିଁ ତା'ର
କାମ ଅଛି କଣ ପୁଣି କରିବାର ?
ସନ୍ଧ୍ୟା ଆସୁଛି ନଇଁ,
ଧୂସର ଆଲୋକେ ସାଗରର ପକ୍ଷୀ
ହୋଇଲେଣି ଏବେ ସବୁ ନୀଡ଼ମୁଖୀ
ବିଳମ୍ବ କାହିଁ ପାଇଁ ?
କେତେବେଳେ ତୁମେ ଆସିବ ଏଘାଟ ପଥେ
ବନ୍ଧନ ଡ଼ୋରି କାଟିଦେବ ତୁମ ହାତେ ।
ଅସ୍ତ ରବିର ଶେଷ କିରଣଟି ପରି,
ରାତ୍ରିରେ ଯିବ ମିଶି ।
ଅନନ୍ତ ପଥେ ତରୀ ମୋର ଯିବ ଭାସି ।।

ମୂଳ ଗୀତାଞ୍ଜଳି - ୮୩

●

# ୪୩

ସମର୍ପଣ ପାଇଁ ପ୍ରସ୍ତୁତ ମୁହିଁ ନଥିଲି ସେଦିନ ପ୍ରଭୁ !
ଲୁଚାଇ ପାରିନି ଅନାବୃତ୍ତ ମୋ ଜୀବନର ଛବି ସବୁ ।
ମମ ଅଜ୍ଞାତେ ଏକ, ସାଧାରଣ ଲୋକପରି,
ପ୍ରବେଶି ଥିଲ ହେ ! ଅନ୍ତର ମୋର ଭରି ।
ଆଙ୍କି ଦେଇଛ ଚିରନ୍ତନ ସେ ରେଖା,
କେତେ ଅସୁମାର କ୍ଷଣିକ ମୁହୂର୍ତ୍ତେ; ସଖା !

ଆଜି ଯେତେବେଳେ ଅନ୍ଧାରୁ ଆଣି
ଆଲୋକରେ ଦେଖେ ପ୍ରଭୁ !
ତୁମ ସ୍ୱାକ୍ଷର, ବହନ କରିଛି
ଜୀବନେ ଘଟେ ଯା'ସବୁ ।
ଧରାଧୂଳି ବୁକେ ବିଛେଇ ରହିଛି ଏହା
ହଜିଲା ଦିନର କେତେ ସୁଖ ଦୁଃଖ,
ସ୍ମୃତିରେ ମିଶିଛି ତାହା ।

ତୁମେ ପ୍ରଭୁ କେବେ ଘୃଣାରେ ମୋଠାରୁ
ମୁହଁ ଫେରାଇନ ରୋଷେ,
ଏ ଧୂଳି ଧୂସର ପିଲାଳିଆ ଖେଳ
ତୁମର କି ମନ ତୋଷେ !
ଖେଳ ଘରେ ପ୍ରଭୁ ! ତା'ଭିତରେ ଯେଉଁ
ଶୁଣିଥିଲି ପଦ ଧ୍ୱନି,
ଆଜି ବି ଶୁଣୁଛି ତାରା ମଣ୍ଡଳେ ଅବିକଳ ପ୍ରତିଧ୍ୱନି ।
ଅବିକଳ ପ୍ରତିଧ୍ୱନି ।।



# ୪୪

ଗମ୍ଭୀର ଆନନ୍ଦ ମିଳେ
ଦେଖିବାକୁ ପଥପ୍ରାନ୍ତେ ବସି
ଆଲୋକେ, ଗୋଡ଼ାଏ ଛାଇ -
କ୍ରୀଡ଼ାମତ୍ତ କେତେ ହସିହସି ।
ଗ୍ରୀଷ୍ମଟାଳି ବରଷା ଆସଇ,
ତାପିତ ପୃଥିବୀ ବୁକୁ କରି ଶୀତଳିତ
ବାରି-ଧାରା ଉଲ୍ଲାସେ ଝରଇ ।।

ଆକାଶୁ ଓହ୍ଲାଇ ଆସି ଦେବଦୂତ ଗଣ
ପଥେ ମୋତେ ସମ୍ଭାଷିଣ କରନ୍ତି ଗମନ ।
ମୋ ହୃଦୟ ଆନନ୍ଦରେ ଭରେ,
ଶୀତଳ ପବନ କେଡ଼େ ମଧୁର ସତରେ ।

ସକାଳୁ ମୁଁ ସଞ୍ଜଯାଏ ଥାଏ ବସି
ବାତାୟନ ପଥେ,
ପ୍ରତୀକ୍ଷାରେ ଚାହିଁଥାଏ
ସେ ଶୁଭ ମୁହୂର୍ତ୍ତେ ।
ଆକସ୍ମିକ ଉଭା ହେବ ଆସି
ଆନନ୍ଦ ପରଶି ।
ପୁଲକି ଉଠେ ମୁଁ ତୋଳି ନିର୍ଜନରେ ଗାନ,
ସୁଲୁସୁଲୁ ବହି ଆସେ, ମଧୁ ସମୀରଣ ।
ମହକର ପ୍ରତିଶ୍ରୁତି ବାଡ଼ି,
କେତେ ଆଶା ଦିଏ ସେ ଅଜାଡ଼ି ।।

●

# ୪୫

ଶୁଣିଛି ତାଙ୍କ ଶ୍ରୀପଦ ଧ୍ୱନି
ସେ ନିତି ନିତି ଆସନ୍ତି ପୁଣି,
ତୁମେ କି କେବେ ଶୁଣିଛ-
ସିଏ, ନୀରବେ ପଦ ପାତି,
ଆସନ୍ତି ଏଥି ସେ କାଳେକାଳେ
ସେ ସବୁ ବେଳେ, ନମାନି ଦିନରାତି ?

ବିଭିନ୍ନ ଭାବେ ବିଭିନ୍ନ ସ୍ୱରେ
ଗାଇଛି କେତେ ଗୀତ,
ସବୁ ଗୀତର ଗୋଟିଏ ଘୋଷା
"ଆସନ୍ତି ସିଏ, ଆସନ୍ତି ସିଏ
ଆସନ୍ତି ଅବିରତ ।"

ମହକ ମଖା ଚଇତ ବୁକେ
ପ୍ରଭାତର ସେ ସ୍ୱର୍ଣ୍ଣଲୋକେ
ବିପୁଳ ବନ ଘଞ୍ଚ ପଥେ
ଆସନ୍ତି ସିଏ ନିତି,
ଆସନ୍ତି ସିଏ..ଆସନ୍ତି ସିଏ
ଆସନ୍ତି ପ୍ରାଣପତି ।

ଆସନ୍ତି ସିଏ ଆକାଶ ପଥେ
ବାଦଲ ରଥେ, ବଜ୍ରନାଦ ତୋଳି,
ଶ୍ରାବଣ ଘନ ଅନ୍ଧକାରେ
ଶ୍ରୀପଦ ତାଙ୍କ ଚାଳି,
ଆସନ୍ତି ନିତି ନିତି,
ନମାନି ଦିନ ରାତି ।

ଜୀବନେ ମୋର,
ଦୁଃଖ ପରେ ଦୁଃଖ ଆସେ ବହି,
ହୃଦୟେ ମମ
ପଦ୍ମ ପଦ ପରଶ ଯାଏ ଛୁଇଁ ।
ଆନନ୍ଦରେ ହୁଏ ମୁଁ ଆତ୍ମହରା
ଆଲୋକି ଉଠେ ହୃଦୟ ମନସାରା ।
ଆସନ୍ତି ସିଏ ଆସନ୍ତି ନିତି ନିତି
ନୀରବେ ପଦପାତି ।
ନୀରବେ ପଦପାତି ।



## ୪୬

ମୋରି ସାଥେ ମିଳନ ଟିକେ ପାଇଁ
କେବେଠୁ ତୁମେ ଆସୁଛ ପ୍ରଭୁ !
ମୁଁ ନିଜେ ଜାଣେ ନାହିଁ,
ମୋଠାରୁ କରି ଦୂର ।
ତମକୁ ପାଇ ହୋଇଛି ମୋର
ପରାଣ ଭରପୂର ।
ଶୁଣେ ମୁଁ ନିତି ସକାଳେ ସଞ୍ଜେ
ଚରଣ ଧ୍ୱନି ତମ,
ତମରି ଦୂତ ନିଭୃତରେ
ହୃଦୟ ଖୋଲି ମମ -
ଡ଼ାକଇ ଥିରିଥିରି...ଆସିବେ ଅଭିସାରୀ ।

ଜାଣେନା ମୁହିଁ, କାହିଁକି ଆଜି
ମୋ ମନ ମାତି ଉଠେ
ଅକୁହା ସେଇ ଆନନ୍ଦ ଧାରା
ଅନ୍ତରେ ମୋ'ଛୁଟେ ।
ଯତେ ବା ଆସି ହେଲାଣିବେଳ
ସାରିବି କାମ ଏଥି ।
ମୁଁ ଅନୁଭବେ ଗନ୍ଧ ତୁମ
ମଧୁର ଅନୁଭୂତି ।
ଆସୁଛ ଯତେ ସାଇଁ !
ମୋ'ରି ସାଥେ ମିଳନ ଟିକେ ପାଇଁ ।।

ମୂଳ ଗୀତାଞ୍ଜଳି -୩୪



## ୪୭

ଏ'ରାତି ଆଜି ବ୍ୟର୍ଥେ ଗଲା ବିତି
ତାଙ୍କରି ପ୍ରତୀକ୍ଷାରେ,
ଭାବୁଛି ମୁହିଁ ଆସିବେ ପ୍ରାଣ ସଖା,
ଶାନ୍ତିଭରେ ମୁଁ ଥିବି ଯେବେ ଶୋଇ -
ପୁଣ୍ୟ ପ୍ରତ୍ୟୁଷରେ ।
ରଖିବ ତୁମେ ଦୁଆର ମୋର ଖୋଲା
ବାରଣ ତାଙ୍କୁ କରିବ ନାହିଁ ଭଲା ।

ତାଙ୍କର ପଦଶବ୍ଦେ ଯଦି
ପାରିବି ନାହିଁ ଉଠି,
ଉଠାଅ ନାହିଁ ମୋତେ -

ପକ୍ଷୀଗଣ ଶବଦ କୋଳାହଳେ
ପ୍ରଭାତରେ ପୁଲକଭରା ଆଲୋକ ତାଳେ ତାଳେ
ଉତ୍ସବର ଉଲ୍ଲସିତ ବାତେ ।
ଶାନ୍ତିରେ ମୁଁ ଶୋଇବା ପାଇଁ ଦିଅ,
ଆସିଲେ ଅବା ଆସନ୍ତୁ ପ୍ରାଣ-ପ୍ରିୟ ।

ନିଦ୍ରା ମୋର କି ପ୍ରିୟତର
ସ୍ପର୍ଶ ତାଙ୍କ ପାଇଲେ ଥରେ -
ଉଠିବି ଥିରି ଥିରି,
ଯିବ ତା'ଅପସରି ।
ନୟନ ପତା ଉଠିବ ଖୋଲି
ମଧୁର ହସ ଦେଖିବ ବୋଲି,
ସମ୍ମୁଖେ ମୋ' ସେ ହୋଇଥିବେ ଉଭା-
ନିଦ୍ରା ଘନ ଅନ୍ଧକାରୁ,
ସ୍ୱପ୍ନସମ ନୟନ ମନଲୋଭା ।

ଆଲୋକର ଆଦ୍ୟ ରେଖା
ରୂପର ସିଏ ଆଦ୍ୟ ଶିଖା ସମ,
ହୁଅନ୍ତୁ ଉଭା ସମ୍ମୁଖେ ମୋ'
ଜାଗ୍ରତ ଏ' ହୃଦୟପୁରେ ମମ ।
ଉଲ୍ଲାସରେ ଶିହରି ଉଠୁ ପ୍ରାଣ ।
କଟାକ୍ଷରୁ ଆଲୋକ ଉଠୁ ଝରି
ନିଜକୁ କରେ ସମର୍ପଣ, ପଦରେ ତାଙ୍କ
ନିଦ୍ରା ପରିହରି ।।



# ୪୮

ପ୍ରଭାତର ନୀରବତା-ସମୁଦ୍ର ବେଳାରେ
ଉଲ୍ଲାସ ଉଲ୍ଲୋଳ ତୋଳେ ପକ୍ଷୀର ସଙ୍ଗୀତ ।
ରାସ୍ତା କଡ଼ ଫୁଲ ବନ ବାସହାସ ଭରା,
ସ୍ୱର୍ଣ୍ଣିମ ସମ୍ପଦ ମେଘ ଫାଙ୍କେ ବିଚ୍ଛୁରିତ ।
ଉପଭୋଗି ପାରୁନା ତାହାକୁ,
ଚାଲିଥାଉ ଏକ ଲୟେ ତାଙ୍କୁ ଭେଟିବାକୁ ।

ନତୋଳୁ ଆନନ୍ଦେ କେବେ ନାଚଗୀତ ଆମେ
ନଯାଉ ନିକଟ ଗାଁ, ପଣ୍ୟ ବିନିମୟେ,
ପଥରେ ନଥାଏ କଥା ବାର୍ତ୍ତା ହସ ଖୁସି
ବହୁଦୂର ବାଟ ଯିବୁ, ଚାଲିଥାଉ ଲୟେ ।
ଏବେ ହେଲାଣି ଉଛୁର,
ହେଉ ତରତର ଆମ ଲକ୍ଷ୍ୟ ବହୁ ଦୂର ।

ମଧ୍ୟାହ୍ନ ହେଲାଣି, ସୂର୍ଯ୍ୟ ମଧ୍ୟ ଆକାଶରେ
ଛାୟା ତରୁତଳେ ଆଶ୍ରା ନିଅନ୍ତି ବତକ,
ପଳିତ ପତ୍ର ଦୋହଲେ ତପ୍ତ ବାୟୁ ବହେ
ବଟ ବୃକ୍ଷ ଛାୟା ସୁପ୍ତ ସେ ମେଷପାଳକ ।

ସ୍ୱପ୍ନ ରଚେ ସିଏ,
ଘର୍ମ ଭିଜା ଶ୍ରାନ୍ତ କ୍ଳାନ୍ତ ଶରୀରକୁ ମୋର
ଘାସ ଶେଯେ ମୁଁ ବିଛାଇ ଦିଏ ।

ଚାଲିଯାନ୍ତି ସହଯାତ୍ରୀ ମୋତେ ଛାଡ଼ି ଏକା
ବିଦ୍ରୂପ ଭର୍ତ୍ସନା କରି, ଊର୍ଦ୍ଧ୍ୱେ ଶିର ତୋଳି ।

ପଛକୁ ଅନାନ୍ତି ନାହିଁ, ଅବିଶ୍ରାନ୍ତ ଗତି
ଦିଗ୍‌ବଳୟ ନୀଳିମାରେ ହଜି ଯିବେ ବୋଲି ।
କେତେ ବଣ ପାହାଡ଼ ବନାନୀ
ଅତିକ୍ରମି ଚାଲିଥାନ୍ତି କେତେ ଦୂର ଦେଶ
ଅଜ୍ଞାତ ଅବନୀ ।

ଯିବାକୁ ରହିଛି ପ୍ରଭୁ ! ଅସରନ୍ତି ପଥ
ପାରୁନାହିଁ କରି ମୋତେ ନିଦ୍ରାରୁ ଜାଗ୍ରତ
ପ୍ରତିକ୍ରିୟା ତୋଳୁନାହିଁ, ବିଦ୍ରୂପ ଭର୍ତ୍ସନା
ବୁଡ଼ାଇ ରଖିଛି ମୋତେ, ଲଜ୍ଜାରେ ଉନ୍ମନା
ଆନନ୍ଦର ମ୍ଳାନଛାୟା ତଳେ,
ହଜିଛି ଅତଳେ ।

ସୂର୍ଯ୍ୟ ଅଙ୍କା ସବୁଜାଭ ତରୁଛାଇ ଘେରା
ଘୋଟିଯାଏ ତନ୍ଦ୍ରା ପ୍ରାଣ ବୁଡ଼ାଇ ଆବେଶେ
ଭୁଲିଯାଏ, କି କାରଣେ ଯାତ୍ରାବାଡ଼େ ମୁହିଁ
ସମର୍ପଣ କରିଦିଏ ମନକୁ ହରଷେ ।
ଛାୟାମାୟା ପ୍ରହେଳିକା ଭେଦି
ସଙ୍ଗୀତ ପରିଧି ।।

ନିଦ୍ରାଗତେ ଉଠେ ଯେବେ
ନୟନ ବିସ୍ଫାରି,
ଦେଖେ ପ୍ରଭୁ ! ଉଭା ହୋଇ -
ଅଛ, ସମ୍ମୁଖରେ ।
ତୁମହସ ହିଲ୍ଲୋଳେ ମୋ'
ସୁପ୍ତି ଅଛି ଲିଭି
ଅଭିରାମ ରୂପତବ
ଦେଖେ ଆନନ୍ଦରେ ।

ଭାବୁଥିଲି ଲକ୍ଷ୍ୟ ପଥ ଦୂର,
ଅତି କ୍ଳାନ୍ତିକର ଯାତ୍ରା -
ଅତି କଷ୍ଟକର ।
କିନ୍ତୁ ତୁମେ ଏତେ ନିକଟରେ ।
ସତେ ପ୍ରଭୁ ! ଏତେ ନିକଟରେ ।



## ୪୯

ଓହ୍ଲାଇ ଆସିଲ ପ୍ରଭୁ ! ତବ ସିଂହାସନୁ
ଉଭା ହେଲ ମୋ କୁଟୀର ଦ୍ଵାରେ ।
ବିହ୍ଵଳେ ମୁଁ ଗାଉଥିଲି ତୁମରି ସଙ୍ଗୀତ
ନିରୋଳାରେ କୁଟୀର କୋଣରେ ।
ସେ ସଙ୍ଗୀତ ମଧୁର ମୂର୍ଚ୍ଛନା,
ଆଣିଲା ତୁମକୁ ଟାଣି ମୋ କୁଟୀରେ ସିନା ।

ତୁମ ଦରବାରେ ଦେଖେ ଅନେକ ଉଦ୍‌ଗାତା
ସଙ୍ଗୀତରେ ମୁଖରିତ ସଦା ପୁଣ୍ୟପୁର,
ମୁଁ ନୂଆ ସାଧିଛି ସ୍ଵର ବାଉଳା ମୋ ଗୀତ -
କିପରି ଛୁଇଁଲା, ଭରି ପ୍ରେମରେ ଅନ୍ତର ।
ମୋର ସେଇ ବିଷାଦ ସଙ୍ଗୀତ
ବିଶ୍ଵ ମହା ସଙ୍ଗୀତରେ ହେଲା ଏକୀଭୂତ ।
ହେ ପରାଣ ସାଇଁ ।
ହାତେ ତୁମେ ମାଳାଟିଏ ନେଇ -
ପ୍ରେମ ଉପହାରେ,
ଆସି ଅଟକିଲ ମୋର କୁଟୀର ଦୁଆରେ ।



# ୫୦

ବୁଲୁଥିଲି ଗ୍ରାମ ପଥଧାରେ
ଭିକ୍ଷା ପାଇଁ ଦୁଆରେ ଦୁଆରେ ।
ହଠାତ୍ ଦେଖିଲି ଦୂରୁ ସ୍ୱପ୍ନସମ
ସ୍ୱର୍ଣ୍ଣମୟ ରଥ,
ଭାବିଲି, ବିଜେ କରୁଛନ୍ତି ଅବା
ସେ ମହାନ୍ ମହିମ୍ନ ସମ୍ରାଟ ।

ଉଲ୍ଲସିତ ହେଲା ମନମୋର
'ଶେଷ ହେଲା ଦୁର୍ଦ୍ଦିନ ଏଥର ।'
ନୀରବରେ ଗଲି ଭିକ୍ଷା ପାଇଁ
ପଡ଼ିଅଛି ଧୂଳିରେ ବିଛେଇ -
ଅସରନ୍ତି ଧନ,
ଛିଡ଼ା ହେଲା ଆସି ଆଗେ
ସେ ରଥ ସୁବର୍ଣ୍ଣ ।
ଓହ୍ଲାଇ ଆସିଲେ ତହୁଁ
ସେ କରୁଣା-ମୟ,
ଭାବିଲି ହୋଇଲା ଏବେ
ମୋ ଭାଗ୍ୟ ଉଦୟ ।
ପଡ଼ିଲାଣି ତାଙ୍କ ଶୁଭ ଦୃଷ୍ଟି
କଟିଯିବ ସମସ୍ତ ଅରିଷ୍ଟି ।

ଆଶ୍ଚର୍ଯ୍ୟେ ଦେଖିଲି, ପ୍ରଭୁ -
ପାତି-ଛନ୍ତି ହାତ,
"କିଦେବ ଦେଉଛ ଦିଅ"
କହୁଛନ୍ତି ହୋଇ ହରଷିତ ।
ରାଜକୀୟ ପରିହାସ ଏକି,
ପାତିଛନ୍ତି ହାତ ଭିକାରିକି ?

ବିସ୍ମିତ ବିମୂଢ଼ ନେତ୍ରେ
ଚାହିଁଲି ତାହାଙ୍କୁ,
ଭାବି ପାରିଲିନି କିସ-
ଅରପିବି, ମୋ ପ୍ରାଣ ପ୍ରଭୁଙ୍କୁ ।
ଦେଲି ହାତ ଟେକି ତାଙ୍କୁ
ମୋ ଥାଳରୁ ମୁଠେ
ସିଏ ଚାଲିଗଲେ ପାଇ ପରମ ସନ୍ତୋଷେ ।

ଫେରିଲି କୁଟୀରେ ଯେବେ
ଭିକ୍ଷା କରି ଶେଷ,
ଝାଡ଼ି ଦେଲି ଝୁଲା ମୋର
ହେଲି ଅଭିଭୂତ ।
ଭିକ୍ଷାଲବ୍ଧ ଧନେ ମୋର ଅଛିକିଛି
ସୁବର୍ଣ୍ଣ କଣିକା,
ଏକି ପ୍ରହେଳିକା !
କାନ୍ଦି କାନ୍ଦି ହେଲି ମୁଁ ଅସ୍ଥିର
ସମର୍ପି ପାରିଲି ନାହିଁ,
ପ୍ରଭୁ ପଦେ ହୃଦୟକୁ ମୋର ।।



# ୫୧

ଦିନ ଗଲା ସରି,
ରାତ୍ରି ଆସିଗଲା ଘନ ତମସା ଆବୋରି ।
ଆଉ କେହି ଆସିବାକୁ ନାହିଁ,
ଘର ଦ୍ୱାର ବନ୍ଦ କରି -
ପଡ଼ିଲେଣି ସମସ୍ତେ ଘୁମାଇ ।
କେ କହୁଚି, "ବିଜେ ଏବେ ହୋଇବେ ରାଜନ ।"
ଆମେ କହୁ, "ଅସମ୍ଭବ, ଅସମ୍ଭବ" ପୁଣ ।

ଜଣାଗଲା ଦ୍ୱାର ଦେଶେ କା'ର କରାଘାତ
ଭାବିଲୁ ନିଶ୍ଚୟ ଏହା ପବନ ଶବଦ,
ଦେଲୁ ତେଣୁ ଦୀପକୁ ଲିଭାଇ
ସର୍ବେ ଗଲୁ ଶୋଇ ।
କେ ପୁଣି କହିଲା, "ଆସିଛନ୍ତି ଦେବଦୂତ ।"
ହସିଣ କହିଲୁ ଆମେ, ଏ ଅଟଇ ପବନ ଆଘାତ ।

ରାତ୍ର ଅର୍ଦ୍ଧ, ପୁଣି ଏକ ଶବ୍ଦ ଗଲା ଶୁଣା
ମନେ ଆସେ ନିଦୁଆ ଭାବନା
ଦୂରୁ ଶୁଭେ ମେଘ ଘଡ଼ଘଡ଼ି,
ନିଦେ ଶେଯେ ଗଲୁ ସବୁପଡ଼ି ।
ଥରିଲା ପୃଥିବୀ ପୁଣି ଦୋହଲିଲା କାନ୍ଥ
ନିଦେ ପୁଣି ହୋଇଲା ବ୍ୟାଘାତ ।
କିଏ ଜଣେ କହିଲେ, "ଏଥର
ଶୁଭୁଅଛି ରାଜାଙ୍କର ରଥର ଘର୍ଘର ।"
ନିଦବୋଳା ସ୍ୱରେ କହୁ, "ନୁହନ୍ତି ରାଜନ,
ଏହା ଅଟେ ମେଘ ଗରଜନ ।"

ରାତ୍ରି ପାହି, ନଥିଲା ତଥାପି
ବାଦ୍ୟରୋଳ ଉଠୁଥିଲା କମ୍ପି ।
ଶୁଣାଗଲା କାର କଣ୍ଠସ୍ୱର,
"ଉଠ ଶୀଘ୍ର, ଉଠଶୀଘ୍ର ବିଳମ୍ବ ନକର ।"
ଭୟେ ଆମେ ଥରିଲୁ ସମସ୍ତେ
ଛାତି ଭିଡ଼ି ହାତେ ।
କେ କହିଲା, "ଦେଖ ଦେଖ ଦୂରେ
ରାଜାଙ୍କର ଧ୍ୱଜା ତହିଁ ଉଡେ ।"
ଆମେ ଛିଡ଼ା ହୋଇଗଲୁ,
କରିଲୁ ଚିତ୍କାର, "ଉଠସବୁ, ଉଠସବୁ ।
"ବିଳମ୍ବ ନକର, ଆଉ ବିଳମ୍ବ ନକର ।"

"ସତେ, ବିଜେ ହୋଇଛନ୍ତି ସାଇଁ !
ସେ ରୋଶନି ଶୋଭାଯାତ୍ରା, ଫୁଲସାଜ କାହିଁ ?
କାହିଁ ରତ୍ନ ସିଂହାସନ, ରାଜ ଦରବାର ?
ନାହିଁ ଏଥି ରାଜାର ସମ୍ଭାର ।
ଲଜ୍ଜାକର...ଲଜ୍ଜାକର ଦରିଦ୍ର ଏ ପୁରୀ
ବିଜେ ପ୍ରଭୁ କରିବେ କିପରି ?"

କେଉଁଠାରୁ ଶୁଭେ ଏହି ସ୍ୱର
"ବୃଥା ତୁମେ ନକରି ଚିତ୍କାର,
ରିକ୍ତ ହସ୍ତ ତୋଳି ତୁମେ
କର ସମ୍ଭାଷଣ,
ପାଛୋଟି ନିଅ ହେ ଖୋଲି
ଶୂନ୍ୟ-ପୁରୀ ତୁମ ।"

ଆସୁଛନ୍ତି ହୃଦୟଈଶ୍ୱର
ଖୋଲିଦିଅ ଦ୍ୱାର ସବୁ ଏଦୀନ କୁଟୀର
ତୋଳି, ଶୁଭଶଙ୍ଖନାଦ,
ରାତ୍ରିର ଏ ଅନ୍ଧକାରେ ଏ ଅନ୍ଧାର ପୁରେ
ସତେକ'ଣ ପ୍ରଭୁଙ୍କର ପଡ଼ିବ ଶ୍ରୀପଦ ।

ଆକାଶରେ ବଜ୍ରର ଗର୍ଜ୍ଜନ
ଅନ୍ଧକାର ଥରିଉଠେ ତଡ଼ିତ୍ ପ୍ରବାହେ
ଛିନ୍ନ ଆସନଟି ଆଣି -
ପାରିଦିଅ ଅଗଣାରେ ତୁମ ।
ଝଡ଼ ବାତ୍ୟା ପ୍ରପୀଡ଼ିତ
ଅନ୍ଧକାର ରାତି,
ଆସୁଛନ୍ତି ଏ ରାତିର ମହାନ ଅତିଥି
ନିଅ ହୃଦପାତି, ତାଙ୍କୁ ନିଅ ହୃଦପାତି ।



## ୫୨

ତୁମରି ଗଳାରେ ପ୍ରିୟ ! ଥିଲା ଯେଉଁ
ସୁବାସିତ ହାର,
ମତୁଆଲା କରିଥିଲା ମୋତେ
ସମ୍ମୋହିତ କରି ବାରବାର ।
ପ୍ରଭାତର ପ୍ରତୀକ୍ଷାରେ ଥିଲି,
ତୁମରି ବିଦାୟ ପରେ ଶଯ୍ୟାପାରୁ
ଫୁଲଟିଏ ପାଇବି ମୁଁ ବୋଲି ।
ରଙ୍କସମ ଖୋଜିଲି ଅଧୀରେ,
ପାଇଲିନି ପାଖୁଡ଼ାଏ ବାସ-କୁସୁମରେ ।

କି ଆଶ୍ଚର୍ଯ୍ୟ! ତା'ବଦଳେ ମୁଁ ପାଇଲି କିସ
ଏହା କ'ଣ ତମ ପ୍ରୀତି ସ୍ମାରକି ପରଶ ।
ନୁହେଁ ସୁରଭିତ ପୁଷ୍ପ, ସୁବାସିତ ବାରି
ଅଟେ ପ୍ରଭୁ ! ଏହା ତୁମ ଦୃପ୍ତ ତରବାରି -
ଅଶନି ପ୍ରତିମ,
ତେଜ ତା'ର, ଅଗ୍ନିଶିଖା ସମ ।।

ସକାଳର କଅଁଳ କିରଣ
ବାତାୟନ ପଥ ଦେଇ ହୁଏ ବିଚ୍ଛୁରିତ,
ତୁମ ଶଯ୍ୟାପରେ ତାହା, ହୁଅଇ ଚିତ୍ରିତ ।
ପ୍ରଭାତର ପକ୍ଷୀ ତୋଳି କିଚିରି ମିଚିରି
ପଚାରନ୍ତି, "ଖୋଜୁଥିଲ ସରା ତୁମେ -
କି ପାଇଲ ନାରୀ ?
"ସୁରଭିତ ପୁଷ୍ପନୁହେଁ, ନୁହେଁ ପାତ୍ର ସୁଗନ୍ଧ ଉଦକ,
ଏହା ତାଙ୍କ ତେଜୋଦୀପ୍ତ ତୃଷିତ ଖଡ଼ଗ"

ଚକିତ ନୟନେ ଚାହିଁ ଭାବୁଥିଲି ବସି
ପ୍ରୀତି ଉପହାର ଏକି ପାଇଲା ପ୍ରେୟସୀ !
ଦୁର୍ବଳ ତା'ସ୍କନ୍ଧେ ଏହା ପାରୁନି ଝୁଲାଇ
ଲଜ୍ଜାରେ ପାରୁନି ଧରି ନପାରେ ଲୁଚାଇ ।
ବୁକେ ତା'ର ଲାଗଇ ଆଘାତ
ଯେତେବେଳେ ଚାପି ଧରେ ପ୍ରସାରି ସେ ହାତ ।
ଶ୍ରଦ୍ଧାଭରେ ଦେଇଛ ଯେ କଷଣର ଭାର,
ଆନନ୍ଦେ ବହନ ତାହା କରିବ ଅନ୍ତର ।

ସଂସାର ସଂଘର୍ଷମୟ,
ମିଳିଗଲା ଅଭୟ ଆଶିଷ
ଏଇ ମୁହୂର୍ତ୍ତରୁ ମୋର
ଭୟ ସବୁ ହୋଇଗଲା ଶେଷ ।
ଏ ଜୀବନେ -
ସକଳ ସଂଘର୍ଷେ ପ୍ରଭୁ ! ତୁମେ ତ ବିଜୟୀ,
ମୃତ୍ୟୁକୁ ପଠାଇଅଛ ସାଥୀ ହେବା ପାଇଁ ।
ଅଭିଷେକ କରିବି ମୁଁ ତା'ରେ
ମୋ ଜୀବନ ସିଂହାସନ ପରେ ।
ତୁମ ଖଡ୍ଗେ କାଟି ଦେବି ସକଳ ବନ୍ଧନ,
ଏ ମାୟା ସଂସାରେ ମୁହିଁ ହେବି ଭୟହୀନ ।

ଏଇ ମୁହୂର୍ତ୍ତରୁ ମୁହିଁ ବିସର୍ଜୁଛି
ଏ'ଅଳୀକ ମୋହ,
ଏ ଖେଳ କଣ୍ଠେଇ ଶୋଭା
ଐଶ୍ୱର୍ଯ୍ୟ ସମ୍ମୋହ ।
ସବୁ ଆଡ଼ମ୍ବର ,
ସଖା ! ଅସାର ଅସାର ।
ନାହିଁ ମୋର ଲାଜ-ପଣ
ନାହିଁ ମଧୁରତା,
ତୁମେ ଦେଇଥିବା ଖଡ୍ଗେ
ହେବି ମୁଁ ଭୂଷିତା ।
ହେ ହୃଦୟେଶ୍ୱର !
ପ୍ରତୀକ୍ଷା ବା କ୍ରନ୍ଦନର ନାହିଁ ଅବସର ।
ସଖା ! ନାହିଁ ଅବସର,
ନୁହେଁ ଏହା କଣ୍ଢେଇ ଖେଳ ।

●

## ୫୩

ତୁମର ସେ ମଣିବନ୍ଧ ଦିଶଇ
ସୁନ୍ଦର ମନୋରମ,
ମଣି ମାଣିକ୍ୟ ରତ୍ନରେ ତାହା
ତାରକିତ ଅନୁପମ ।
ସତେକେଡ଼େ ମନଭୁଲା,
ବହୁବର୍ଣ୍ଣର ଅଟଇ ବର୍ଣ୍ଣମାଳା ।

ତଥାପି ଦେଖୁଛି ତରବାରି ତମ
ଅଟଇ ଅତୁଳନୀୟ,
ବକ୍ରିଳ ତା'ର ରଶ୍ମି ଝଲକ
ଲୋଭନୀୟ ଶୋଭନୀୟ
ପ୍ରସାରିତ ତାହା ବିଷ୍ଣୁବାହନ -
ଗରୁଡ଼ ପକ୍ଷୀ ପକ୍ଷ ଯେସନ,
ଅସ୍ତ ସୂର୍ଯ୍ୟ ରକ୍ତ କିରଣ -
ପରି, ଦିଶେ ମନଲୋଭା,
ଅବ୍ୟକ୍ତ ତା'ର ଶୋଭା ।

ଥରି ଉଠେ ଘନଘନ
ଅସ୍ତ ଝଲକ ସମ ।
ମୃତ୍ୟୁର ଅବା ଅନ୍ତିମ ଚୋଟ
ଦୀର୍ଣ୍ଣ କରିଛି ଛାତି,
ଯନ୍ତ୍ରଣା ଉଠେ ଉଲ୍ଲାସ ଭରେ ମାତି ।

ଉଦ୍ଭାସି ଉଠେ ଏହା
ଦର୍ପିତ ଶିଖା ପାର୍ଥିବ ସତ୍ତା
କରୁଅଛି ଅବା ସ୍ୱାହା ।

ସୁନ୍ଦର କେଡ଼େ ଦିଶେ ତୁମ ମଣିବନ୍ଧ
ତାରକିତ ତାହା ମଣି ମାଣିକ୍ୟେ, ରତ୍ନରେ ଅନୁବନ୍ଧ ।
ଆହେ ପ୍ରଳୟର ପତି !
ଖଡ୍ଗ ତୁମର ସୁନ୍ଦର ଦିଶେ ଅତି ।।



## ୫୪

ମାଗି ମୁଁ ନଥିଲି କିଛି,
ତୁମକାନେ ମୋ ନାମକୁ ଉଚ୍ଚାରି ନଥିଲି,
ତୁମେ ଗଲାବେଳେ, ଏକା -
କୂଅପାଖେ ନିରବରେ ଛିଡ଼ା ହୋଇଥିଲି ।
ତରୁ ଛାୟା ପଡ଼ିଥିଲା ତୀର୍ଯ୍ୟକ ଭଙ୍ଗୀରେ
ପଲ୍ଲୀ ସୀମନ୍ତନୀଗଣ
ତରତରେ ଫେରୁଥିଲେ ଘରେ ।
କାଖେ ଧରି ଜଳଭରା ବାଦାମୀ କଳସୀ,
ଡ଼ାକୁଥାନ୍ତି ମୋତେ ହସିହସି
"ଆମ ସାଥେ ଚାଲିଆସ ତୁମେ
ତୀବ୍ର ଏଇ ଅସହ୍ୟ ମଧ୍ୟାହ୍ନେ ।"
କ୍ଳାନ୍ତି ବସେ ଅଟକିଲି ହୋଇ ଉନମନାଃ
ମନେ ଭରି ଅଳୀକ ଭାବନା ।

ତୁମ ପଦଶବ୍ଦ ମୁହିଁ ନପାରିଲି ଶୁଣି
କେତେବେଳେ ହେଲ ଉଭା -
ନପାରିଲି ଜାଣି ।
କ୍ଷୀଣ କଣ୍ଠେ କହୁଥିଲନିକି ?
"ମୁଁ ଅଟଇ ତୃଷାର୍ତ୍ତ ପଥିକ ।"
ଦିବା ସ୍ୱପ୍ନୁ ମୁଁ ଉଠିଲି ଜାଗି
ତୁମ ଆଞ୍ଜୁଳାରେ ମୁହିଁ
କଳସୀରୁ ଜଳ ଦେଲି ଟେକି ।

ତରୁପରେ ଶୁଭୁଥିଲା ପତ୍ରର ମର୍ମର
ଦୂରଛାୟା ଅନ୍ଧକାରୁ ପୀକ କଣ୍ଠସ୍ୱର -
ଆସୁଥିଲା ଭାସି,
ପତ୍ରଧାରେ ବକୁଳର ସୁଗନ୍ଧ ପରଶି ।
ନିର୍ବାକେ ହୋଇଲିଛିଡ଼ା
ତୁମ କଣ୍ଠେ ଶୁଣି ମୋର ନାମ,
ମନେ ଯେ ରଖିଛ ମୋତେ,
କରିନିତ 'ମନେରଖା କାମ ।'
ମୁଁ କିନ୍ତୁ ନପାରେ ଭୁଲି -
ତୃଷାର୍ତ୍ତ ପଥିକେ ଦିନେ ଦେଇଥିଲି ଜଳ,
କିପରି ଭୁଲିବି ସେଇ ଅପାସୋରା
ମଧୁର ସେ ସ୍ମୃତିକୁ ମୋ'ର !

ପ୍ରଭାତ ଗଲାଣି ଚାଲି ହେଲାଣି ବିଳମ୍ବ,
କ୍ଳାନ୍ତ ପକ୍ଷୀ ତୋଳେ ତା'ର ରାବ,
ନିମ୍ବ ଗଛ ପତ୍ର ତୋଳେ ମର୍ମର ସଙ୍ଗୀତ
ମୁଁ, ମନ ଲୋଭା ଭାବ ବିମୋହିତ ।
ତୁମ ପଦଶବ୍ଦ ମୁହିଁ, ନପାରିଲି ଶୁଣି
କେତେବେଳେ ଉଭାହେଲ
ନପାରିଲି ଜାଣି ।।



୫୫

## ୫୫

ଉଦାସ ଆକୁଳ ଛାୟା ଘୋଟିଛି ଅନ୍ତରେ
ତନ୍ଦ୍ରାୟିତ ତୁମର ନୟନ,
ତୁମେ କି ପାରୁନ ଜାଣି -
କଣ୍ଟକର ସିଂହାସନେ ବସି,
ଦର୍ପେ ସମାରୋହେ ପୁଷ୍ପ,କରେ ରାଜପଣ ?
ଜାଗରିତ ହୁଅ ହେ ଜାଗ୍ରତ !
ବୃଥାରେ ସମୟ ଆଉ ନକର ବ୍ୟତୀତ ।

କଙ୍କରିଳ ପଥ ପ୍ରାନ୍ତେ ନିର୍ଜନ ସେ
ନିରବିତ ପୁରେ,
ବସିଛନ୍ତି ସଖା ମୋର, ଏକାନ୍ତେ ସେଠାରେ
କର ନାହିଁ ତାଙ୍କୁ ପ୍ରତାରିତ,
ହେ ଜାଗ୍ରତ ! ହୁଅ ଜାଗରିତ ।
ମଧ୍ୟାହ୍ନ ସୂର୍ଯ୍ୟର ତାପେ ହୋଇ ଧଇଁସଇଁ
ଯଦି ଥରି ଉଠିବ ଆକାଶ,
ଉତପ୍ତ ବାଲୁକା ଯଦି ତୃଷାଭରେ
ହେବ ବ୍ୟାକୁଳିତ,
ସେଥିରେ ବା ଯାଏ ଆସେ କିସ ?

ହେଉନିକି ପୁଲକିତ ଉଲ୍ଲାସେ ହୃଦୟ
ଆନନ୍ଦେ କି ଲୋଟୁନାହିଁ ଅଥଳ ଅନ୍ତର !
ତୁମ ପଦାଘାତେ, ପଥ ବଲ୍ମୀର ବୁକେ -
ମୂର୍ଚ୍ଛିତକି ହେଉନାହିଁ
ଯନ୍ତ୍ରଣାର ମଧୁର ଝଙ୍କାର ?



## ୫୬

## ୫୬

ମୋ ଅନ୍ତରେ, ମୋ ଭିତରେ
ତୁମ ପ୍ରେମ ରହିଅଛି ପୂରି
ମୁଁ ପରା ଅଟଇ ତୁମ
ପ୍ରାଣ ସହଚରୀ ।
ତୁମର ସେ ଆନନ୍ଦ ଅପାର
ମୋ ହୃଦୟେ ସଦା ଭରପୂର ।
ପ୍ରେମ ରୂପେ, ଆନନ୍ଦ ରୂପରେ -
ମୋ ପାଶକୁ ଆସିଛ ଓହ୍ଲାଇ,
ଜଗତ ଈଶ୍ୱର ତୁମେ
ଆହେ ପ୍ରାଣସାଇଁ ।
ଯଦି ନଥାନ୍ତି ମୁଁ ପୁଣି,
କିଏ ହୋଇଥାନ୍ତା ତୁମ ପ୍ରୀତିପାଟରାଣୀ ?

କରିଛ ସଙ୍ଗିନୀ ମୋତେ
ଭବେ ବିଭବରେ,
ତୁମଲୀଳା ଲୀଳାୟିତ
ମୋ ହୃଦୟ ପୁରେ ।
ଯେତେଯେତେ ସବୁ ଇଛା ତୁମ,
ମୋ ଜୀବନେ ରୂପାୟିତ
ଆହେ ଅନୁପମ ।
ଅନିର୍ବଚନୀୟ ତମ ରୂପର ସମ୍ଭାର
ମୋ ହୃଦୟ ଆକର୍ଷଣ କରେ ବାରବାର -
ବିମୋହିତ, ଆହେ ପ୍ରେମମୟ !
ବନ୍ଧା ଚିରଦିନ ଆମେ ବନ୍ଧନେ ଉଭୟ ।



# ୫୭

ହେ ଆଲୋକ ! ମୋ ପ୍ରିୟ୍ ଆଲୋକ
ବିଛୁରିତ ଏ ବିଶ୍ୱଭୁବନେ,
ଅନ୍ତରେ ଅମୃତ ଢ଼ାଳି -
ସିକ୍ତକର, ନୟନ ଚୁମ୍ବନେ ।

ପ୍ରିୟତମ ! ଆହେ ପ୍ରିୟତମ !
ଆଲୋକର ଅଭିସାର ଅତଳ ଅନ୍ତରେ,
ପ୍ରୀତିର ମୂର୍ଚ୍ଛନା ଝରେ -
ପ୍ରଣୟ୍-ତନ୍ତ୍ରୀରେ ।
ବହେ ବାୟୁ ପ୍ରମତ୍ତ ଅଧୀର,
ଆକାଶ ଉଠଇ ହସି
ଉଠେ ହସି ବିଶ୍ୱ ଚରାଚର ।

ଆଲୋକ ସାଗରେ ଭାସି
ପ୍ରଜାପତି ମେଲିଥାନ୍ତି ଡ଼େଣା
କଇଁ, କମଳ, ମଲ୍ଲୀକା ଫୁଟିଥାନ୍ତି
ହୋଇ ଉନମନା ।
ଢ଼େଉ ପରେ ଢ଼େଉ ଉଠେ ମାତି,
ତା'ବୁକୁରେ ହାସ୍ୟମୟୀ ଫୁଲର ପୀରତି ।

ମେଘକୁ ମଣ୍ଡନ କରେ
ଆଲୋକର ଶିଖା
ପାଲଟି ଯାଏ ସେ ତହିଁ
ସୁବର୍ଣ୍ଣ କଣିକା ।
ଆହେ ପ୍ରିୟତମ !
ବିଛାଡ଼ି ଦିଏ ସେ ମଣି
ମାଣିକ୍ୟ ଅସୀମ ।

ପତ୍ରେ ପତ୍ରେ ସଞ୍ଚରଇ
            ବିପୁଳ ଆହ୍ଲାଦ
ଖେଳିଯାଏ ଆହେ ସଖା !
            ଅମାପ ଆନନ୍ଦ ।
ଆଲୋକର ମନ୍ଦାକିନୀ
            ଉଛୁଳାଏ କୂଳ,
ଚତୁର୍ଦ୍ଦିଗେ ଖେଳିଯାଏ
            ଆନନ୍ଦ ଉତ୍ତାଳ ।
            ଏ ବିଶ୍ୱ ଭୁବନ
            ଆହେ ପ୍ରିୟତମ ।



## ୫୮

ମୋ ଜୀବନ ଅନ୍ତିମ ସଙ୍ଗୀତେ
ମିଶିଯାଉ ଏ ଜୀବନ
            ଅନାହତ ଆନନ୍ଦରସ୍ୱର ।
ଯେ ଆନନ୍ଦେ ଉଦ୍ଦାମ ଆବେଗେ -
ହସିଉଠେ ଧରଣୀର ଶ୍ୟାମ ଦୂର୍ବାଦଳ ।

ଯେ ଆନନ୍ଦ ଜନ୍ମ ଦିଏ
            ଜନ୍ମ ମୃତ୍ୟୁ ଯମଜ ଭାଇରେ,
ଯା'ଲୀଳା ପ୍ରକଟେ ନିତ୍ୟ
            ବିପୁଳ ଏ ବିଶ୍ୱ ଚରାଚରେ ।

ତୋଳି ଅଟ୍ଟହାସ,
ସେ ଆନନ୍ଦ ଝଡ଼ ଉଠେ ମାତି,
ଜାଗ୍ରତ କରି ଏ ବିଶ୍ୱ ଜୀବନ ସମୂହ
ଥରାଏ ତା'ଛାତି ।
ଯନ୍ତ୍ରଣାର ପ୍ରସ୍ଫୁଟିତ ଲୋହିତ ପଦ୍ମରେ
ସେ ଆନନ୍ଦ ଅଶ୍ରୁଢ଼ାଳି
ବସିଥାଏ ତହିଁ ନିଶ୍ଚଳରେ ।

ଏଇ ସେଇ ଭୀମକାନ୍ତ ଆଁନନ୍ଦ ମୂରତି
ଧୂଳି ବୁକେ ନିକ୍ଷେପଇ ସୃଷ୍ଟିର ବିଭୂତି ।
କାହା କଥା ସେ ଶୁଣଇ ନାହିଁ,
ତା'ବ୍ୟତୀତ କିଛି ନ ଜାଣଇ ।



## ୫୯

ଏଇତ ତୁମର ପ୍ରେମ ହୃଦୟ ହରଣ
ପତ୍ରେ ଯେ ଆଲୋକଝରେ ସୁବର୍ଣ୍ଣ ବରଣ ।
ମଧୁର ଅଳସ ଭରେ
ଭାସେ ମେଘ ଆକାଶରେ,
ଏଇ ଯେ ସମୀର ବହେ, କରେ ଦେହେ
ଅମୃତ ଝରଣ,
ଏଇତ ତୁମର ପ୍ରେମ ହୃଦୟ ହରଣ ।

ପ୍ରଭାତେ ଆଲୋକ ବନ୍ୟା,
ଭାସୁଅଛି ଏ ନୟନ ମମ
ଛୁଇଁ ଯାଉଅଛି ପ୍ରାଣେ
ଶ୍ରଦ୍ଧାମୟ ପ୍ରେମବାଣୀ ତମ।
ଆସୁଛି ଊର୍ଦ୍ଧ୍ୱରୁ ସଖା !
ତମମୁଖ ମୋ ଆଡକୁ ନଇଁ,
ତମ ଆଖି ଅବିରତ
ମୋ ମୁଖକୁ ରହିଅଛି ଚାହିଁ ।
ଛୁଇଁ ଅଛି ଏ ହୃଦୟ ମମ,
ତୁମର ସେ ପବିତ୍ର ଚରଣ।
ଏଇତ ତୁମର ପ୍ରେମ
ହୃଦୟ ହରଣ ।

ମୂଳ ଗୀତାଞ୍ଜଳି -୩୦



## ୬୦

ଏ ବିଶ୍ୱର ସୀମାହୀନ ସମୁଦ୍ର ବେଳାରେ
ଶିଶୁଙ୍କର ମେଳାବସେ,
ନାଚ ଗୀତ, ଭରା-କୋଳାହଳେ ।
ଅନନ୍ତ ଆକାଶ ଊର୍ଦ୍ଧ୍ୱେ, ସ୍ତବ୍ଧେଥାଏ ଚାହିଁ
ଅଶାନ୍ତ ସମୁଦ୍ର ତଳେ ଗର୍ଜନ ତୋଳଇ ।

ଶାମୁକା ଗୋଟାଇ ପିଲେ,
ଖେଳୁଥାନ୍ତି କରି ବାଲିଘର ।
ସ୍ରୋତମୁଖେ ଯାଏ ଭାସି
ତାଙ୍କ ଡ଼ଙ୍ଗା, ଶୁଖିଲା ପତର ।

ନାଚି ନାଚି ଯାଏ ଚାଲି ଦୂରେ,
ଆନନ୍ଦେ ଖେଳନ୍ତି ପିଲେ,
ସଂସାରର ସମୁଦ୍ରବେଳାରେ ।

ପିଲାଏ ନାହାନ୍ତି ଶିଖି ସମୁଦ୍ର ପହଁରା
ଶିଖିବି ନାହାନ୍ତି ଖୋଲି ଜାଲ ମାଛଧରା ।
ଶାମୁକା ସଂଗ୍ରହକାରୀ ମୁକୁତା ଆଶାରେ
ଅତଳ ସମୁଦ୍ରେ ବୁଡ଼ ପକାନ୍ତି ସେ ଧୀରେ
ବଣିକ ସକଳ,
ନଉଯାତ୍ରା ତୋଳିଥାନ୍ତି ହୋଇ ଦଳଦଳ ।

ପିଲାଏ ଖୋଜନ୍ତି ନାହିଁ ଲୁକ୍କାୟିତ ଧନ
ଖୋଜନ୍ତି ବାଲିଗରଡ଼ା ଦେଇ ମନଧ୍ୟାନ
ତାକୁ ପୁଣି ବାଲି ବୁକେ ଦିଅନ୍ତି ଫୋପାଡ଼ି
ଜାଣନ୍ତିନି ଜାଲକୁ ସେ ଭିଡ଼ି ।
ସମୁଦ୍ର ଉଠଇ ଫୁଲି ହସର ଜୁଆରେ
ବେଳାଭୂମି ଉଠେ ହସି ସେ ହସ ଢ଼େଉରେ ।
ଭୀଷଣ ତରଙ୍ଗ ତୋଳେ, ଅବୁଝା ତା'ଗୀତ
ଯେପରି ଗାଆନ୍ତି ମା,
ଛୁଆ ମନଭୁଲା ତାଙ୍କ -
ଅନାବନା ମଧୁର ସଙ୍ଗୀତ ।
ତା'ଛୁଆର ଦୋଳନାଟି ଝୁଲାଇ ଝୁଲାଇ ।
ପିଲାଙ୍କ ସାଥୀରେ ସତେ ସମୁଦ୍ର ଖେଳଇ
ହସର ଜୁଆରେ
ବେଳାଭୂମି ହସି ଉଠେ ସେ ହସ ଢ଼େଉରେ ।

ବିଶ୍ୱ ଶିଶୁଙ୍କର ମେଳା
ଅନନ୍ତ ଏ ସମୁଦ୍ର ବେଳାରେ
ଝଡ଼ ତାର ଡ଼େଣା ମେଲେ
ପଥହୀନ ବ୍ୟାପ୍ତ ଆକାଶରେ ।
ଓଲଟେ ନୌକା ତା'ମାଡ଼େ
ଯାଏ ତହିଁ ବୁଡ଼ି,
ଖେଳିଯାଏ ମୃତ୍ୟୁର ସେ
କରାଳ ଲହଡ଼ି ।
ଶିଶୁମାନେ ଖେଳୁଥାନ୍ତି ମହା ଆନନ୍ଦରେ
ବିଶ୍ୱ, ଶିଶୁଙ୍କର ମେଳା
ଅନନ୍ତ ଏ ସମୁଦ୍ର ବେଳାରେ ।।



## ୬୧

ଜାଣିଛକି ତୁମେ,
"କେଉଁଠାରୁ ନିଦ୍ରାଆସି -
ଶିଶୁଙ୍କର ନୟନକୁ ଚୁମେ ?
ଶୁଣାଅଛି ଲୋକ କଥାଟିଏ
"ପରି ରାଇଜର ଏକ ଯାଦୁପୁରୀ ସିଏ ।
ବନ ବୃକ୍ଷବୀଥି ଛାୟା ଯାଇଥାଏ ଘେରି
ଖଦ୍ୟୋତର ମ୍ଳାନାଲୋକେ -
ଆଲୋକିତ ପୁରୀ ।
ତହିଁ ଅଛି ମୋହାବିଷ୍ଟ ଦୁଇଟି କଳିକା
ତହୁଁ ନିଦ୍ରା ଆସି ମୁଦେ
ଶିଶୁଟିର ନୟନ ପେଟିକା ।

ସୁପ୍ତଶିଶୁ ଅଧର ଥରାଇ
ଉକୁଟେ ଯେ ହାସ୍ୟରେଖା
କାହୁଁ ତା, ଝରଇ
ଜାଣିଛକି କିଏ ?
ସେଥିପାଇଁ ଅଛି କଥାଟିଏ ।
"ଶରତର ଲିଭାଲିଭା ମେଘ ରେଖା ଛୁଇଁ -
ତୃତୀୟା ଚାନ୍ଦର ମ୍ଳାନ ସ୍ନିଗ୍ଧ ସପନରୁ,
ମୃଦୁ ମନ୍ଦହସ ରେଖାଝରେ ତା'ମୁଖରେ
ଅମୃତ ଝରଇ ସୁପ୍ତଶିଶୁ ଓଠ ଧାରୁ
ଫୁଟାଏ ହରଷ,
ଦେଇ ତା' ପରଶ ।

ସ୍ନିଗ୍ଧ ସୁକୁମାର ଅଟେ ଶିଶୁର ଶରୀର
ଅମାପ ଲାବଣ୍ୟଭରା ସତେଜ ମଧୁର ।
କହିକି ପାରିବ କିଏ, ଏତେ କୋମଳତା -
କେଉଁଠାରେ ଥିଲା ଲୁଚି, ଏତେ ମଧୁରତା ?
'ହୁଁ'
"ଦିନେ ତା'ର ମା'ଥିଲା ଅନୂଢ଼ା କିଶୋରୀ
ମୃଦୁଳା ଲାବଣ୍ୟମୟୀ ଶାନ୍ତ ସୁକୁମାରୀ ।
ମଧୁରତା, କୋମଳତା, ପ୍ରେମ ପ୍ରଶାନ୍ତିମା
ତା' ହୃଦୟେ ଥିଲା ସିଏ -
ଶାନ୍ତଶୀଳା ରହସ୍ୟ ପ୍ରତିମା ।
ତା ଶରୀରେ ଲାବଣ୍ୟର ଫଲ୍‌ଗୁ ଥିଲା ବହି
ଆସିଅଛି ତା' ଶିଶୁର -
ଶରୀରେ ଓହ୍ଲାଇ ।
ଶରୀରକୁ ତା'ର,
କରିଛି ସତେଜ, ସ୍ନିଗ୍ଧ, ରୂପମୟ
ଏଡ଼େ ସୁକୁମାର ।।

●

# ୭୨

ତୋ ହାତରେ ଦିଏ ଯେବେ ରଙ୍ଗିନ୍ ଖେଳନା
ରଙ୍ଗର ମହତ୍ତ୍ୱ ମୁହିଁ ବୁଝେ ତେବେ ସିନା
ଜଳସ୍ଥଳ ଆକାଶ କୁସୁମ,
ଚାରିଆଡେ ବର୍ଣ୍ଣବିଭା ଦିଶେ ଅନୁପମ ।
ହେବୁ ବୋଲି ବର୍ଣ୍ଣରେ ବିଭୋର -
ରଙ୍ଗିନ୍ ଖେଳନା ଦିଏ ହାତରେ ତୋହର ।

ତୁ ନାଚିବୁ ବୋଲି ଯେବେ ଗାଏ ମୁହିଁ ଗୀତ
ଜାଣେ, ସେତେବେଳେ ପତ୍ରେ
ରହିଥାଏ ଭରି କେତେ ମଧୁର ସଙ୍ଗୀତ ।
ସାଗର ତରଙ୍ଗମାଳା କାହିଁକି ଯେ
ସମସ୍ୱରେ ତୋଳନ୍ତି ମୂର୍ଚ୍ଛନା,
ନିଖିଳ ଭୁବନ ଶ୍ରୋତାଗଣଙ୍କର ତାହା -
କିମ୍ପା ଏତେ ହୃଦ ମନ କିଣା ?
ଜାଣେ ତାହା,
ମୋ ଗୀତରେ ନାଚିବୁ ତୁ ବୋଲି
ସଙ୍ଗୀତ ମୁଁ ଦେଇଥାଏ ତୋଳି ।
ଯେତେବେଳେ ମିଠା ମିଠା କେତେ ଦ୍ରବ୍ୟ -
ଦିଏ ତୋର ଲୋଭାତୁର ହାତେ,
ମୁଁ ଜାଣେ ଫୁଲରେ କିଆଁ
ରହିଥାଏ ମଧୁରତା ଏତେ ।

ଜାଣେ ମୁହିଁ, ଅଲକ୍ଷ୍ୟରେ
ଫଳେ ଫଳେ ପରା,
ଏତେ ସ୍ନିଗ୍ଧ ମଧୁରସ
କିଆଁ ହୁଏ ଭରା ।
ଯେତେବେଳେ ତୋର ସେଇ
ଲୋଭାତୁର ହାତେ,
ମିଠା ମିଠା ଦ୍ରବ୍ୟ ଆଣି
ଦିଏ ବାବୁ ତୋତେ ।

ଆରେ ପ୍ରାଣଧନ !
ତୋ ମୁଖରେ ଯେତେବେଳେ
ଦିଏ ମୁଁ ଚୁମ୍ବନ,
ବୁଝେ ମୁହିଁ କି ଆନନ୍ଦ ଅଛି ତହିଁ ଭରି
ବୁକୁ ଉଠେ ଥରି ।
ଆକାଶୁ ଝରଇ ଯେଉଁ ଆଲୋକ ପ୍ରଭାତେ
ଶାନ୍ତି ଶୀତଳତା ଭରା ବସନ୍ତର ବାତେ,
ଦେହ ମନହୁଏ ପୁଲକିତ
ହୁଏ ବିମୋହିତ ।
ଯେତେବେଳେ ତୋ ମୁଖରେ ଦିଏ ମୁଁ ଚୁମ୍ବନ
ସେ ଆନନ୍ଦ ପାଏ ପ୍ରାଣଧନ ।



## ୬୩

କେତେ ଅଜଣା ହେ ଜଣାଇଲ ମୋତେ
କେତେଘରେ ଥାନ ଦେଇ,
ଦୂରକୁ କରିଲ ନିକଟ, ବନ୍ଧୁ !
ପରକୁ କରିଏ ଭାଇ ।
ପୁରୁଣା ଘରକୁ ଛାଡ଼ିଯିବା ବେଳେ
କେ ଜାଣି କି ହେବ ଭାବି ମନେ ମରେ,
ଅନେକ ଭିତରେ ତୁମେ ପୁରାତନ
ସେ କଥାଟି ଭୁଲିଯାଇ ।
ଦୂରକୁ କରିଲ ନିକଟ, ବନ୍ଧୁ !
ପରକୁ କରିଲ ଭାଇ ।

ଜୀବନେ ମରଣେ ନିଖିଳ ଭୁବନେ
ଯେଉଁଠାକୁ ଯେବେ ନେବ,
ଚିର ଜୀବନର ପରିଚିତ ଆହେ !
ସେ ସବୁକୁ ଚିହ୍ନାଇବ ।
ତୁମକୁ ଜାଣିଲେ, ଭାବ ପରାପର
ନଥାଏ ବାରଣ ନଥାଏ ବା ଡ଼ର,
ତୁମେ ଜାଗିଅଛ ସବୁରି ଭି଼ତରେ
ଦେଖା ଯେହ୍ନେ ସଦା ପାଇ ।
ଦୂରକୁ କରିଲ ନିକଟ, ବନ୍ଧୁ !
ପରକୁ କରିଏ ଭାଇ ।
ତମ ପଦେ ମୋର ଏତିକି ମିନତି ପୂରଣ କର ହେ ସାଇଁ
ତମରି ପରଶ ଆଶିଷରୁ ମୋତେ ବଞ୍ଚିତ କର ନାହିଁ ।
ସମସ୍ତଙ୍କ ସାଥେ ସବୁବେଳେ ମୁହିଁ ଖେଳେ
ଜଣକ ପାଇଁ ମୁଁ ବ୍ୟାକୁଳିତ ସବୁବେଳେ ।

ମୂଳ ଗୀତାଞ୍ଜଳି - ୩



# ୬୪

ନିର୍ଜନ ସେ ନଦୀତୀରେ
ଗଡ଼ାଣିଆ ଘାସ ପଡ଼ିଆରେ,
କିଶୋରୀଟି ହୋଇଥିଲା ଛିଡ଼ା
ବାସ ଢ଼ଙ୍କା ପ୍ରଦୀପ ହାତରେ ।
ପଚାରିଲି ତା'ପାଖକୁ ଯାଇ,
"କେଉଁଆଡ଼େ ଯାଉଅଛ
ଏ ପ୍ରଦୀପ ପ୍ରଜ୍ୱଳନ ପାଇଁ ?
ଅନ୍ଧକାର ନିର୍ଜନ ମୋ ଘର
ଦେବକି ଦୀପଟି ମୋତେ
ଆଲୋକିତ କରିବି ମୋ ପୁର ।"

ନୀଳିମ ନୟନ ତୋଳି ସେ ଚାହିଁଲା
ମୋ ମୁହଁକୁ କ୍ଷଣେ,
ଦିନାନ୍ତର ଗୋଧୂଳି ଲଗନେ ।
କହିଲା କୋମଳ କଣ୍ଠେ,
"ଆସିଥିଲି ଏ ନଦୀ କୂଳକୁ
ଅସ୍ତ ସୂର୍ଯ୍ୟ ଲଗନରେ,
ଏ ଦୀପଟି ମୁହିଁ ଜାଳିବାକୁ ।
ଜଳଧାରେ ଦେବି ମୁଁ ଭସାଇ
ରହିଅଛି ଚାହିଁ ସେଥିପାଇଁ।"
ଲମ୍ବା ଲମ୍ବା ଘାସ ମଧ୍ୟେ ଏକାକୀ ମୁଁ
ହୋଇଥିଲି ଛିଡ଼ା,
ଦେଖୁଥିଲି ଦୀପଟିକୁ
ଭାସୁଥିଲା ହୋଇ ଦିଗହରା ।
ତା' ଥରା କିରଣ
ପଡ଼ିଥିଲା ଜଳଧାରେ ହୋଇ ରଣଭଣ ।

ସେ ରାତ୍ରିର ଘନ ଅନ୍ଧକାରେ
ପଚାରିଲି କିଶୋରୀକୁ ବାରେ,
''ଆଲୋକିତ ହୋଇଲାଣି ଦୀପାଳୀ ଯେତେକ
କେଉଁଠେ ଥାପିବ ଏବେ
ତୁମ ଦୀପଟକ ?
ଅନ୍ଧକାର ଅଟେ ମୋର ଘର
ଦେବକି ଗୋ ଦୀପଟିଏ ତୁମେ
ଆଲୋକିତ କରିବି ମୋ ପୁର ?''

ନୀଳିମ ନୟନ ତୋଳି, ସେ କିଶୋରୀ
ଭାବି ଭାବି, ଚାହିଁଲା ମୁହଁକୁ,
କହିଲା କୋମଳ କଣ୍ଠେ,
''ଦେଖ ଏଇ, ଶାନ୍ତ ଆକାଶକୁ -
ଦୀପ ଦାନ କରିବି ମୁଁ ବୋଲି,
ମୁହିଁ ଏଥି, ଆସିଥିଲି ଚାଲି ।''
ମୁଁ ଚାହିଁଲି ଆକାଶକୁ, ଦେଖୁଥିଲି ଦୀପଟି ତାହାର
ମହାଶୂନ୍ୟେ ଜଳୁଥିଲା ହୋଇ ଥରଥର ।

ଚନ୍ଦ୍ରହୀନ ଘନ ଅନ୍ଧକାରେ, ପୁଣି
ପଚାରିଲି ତାକୁ,
'ହେ କିଶୋରୀ ! କା'ର ଅନ୍ୱେଷଣେ ତୁମେ
ଜଡ଼ାଇ ଧରିଛ ବୁକେ, ଏହି ପ୍ରଦୀପକୁ ?
ଅନ୍ଧକାର ନିର୍ଜନ ମୋ ଘର,
ଦେବକି ଦୀପଟି ମୋତେ
ଆଲୋକିତ କରିବି ମୋ ପୁର ?

କିଛିକ୍ଷଣ ପାଇଁ ପଥେ
ଗଲା ସେ ଅଟକି,
ମୋ ମୁଖକୁ ଅନ୍ଧକାରେ
ଚାହିଁଲା ନିରେଖି ।
କହିଲା କୋମଳ କଣ୍ଠେ,
"ମୋ ଦୀପକୁ ଆଣି ଅଛି ପରା !
ଦୀପମହୋତ୍ସବେ ହସେ ଦୀପର ପସରା
ମୋ'ଏ ଦୀପ, ଜଳିବ ତା'ସାଥେ
ନୀରବ ନିଶିଥେ ।"
ମୁଁ ବିସ୍ମୟେ ଛିଡ଼ା ହୋଇ ଦେଖୁଥିଲି
ତା'ର ସେଇ ଛୋଟ ଦୀପଟିକୁ ।
ଅନନ୍ତ ଦୀପର ସାଥେ ଜଳୁଥିଲା
ହଜାଇ ନିଜକୁ ।

## ୬୫

ହେ ମୋର ଦେବତା ! ଭରିଛ ଏ ଦେହେ, ପ୍ରାଣ
କି ଅମୃତ ତୁମେ ଚାହଁ କରିବାକୁ ପାନ ?
ନୟନରେ ମୋର ତୁମରି ବିଶ୍ୱଛବି -
ଦେଖିବାରେ, ତୁମେ ଆନନ୍ଦ ଲଭ କି କବି ?
ନୀରବେ ମୋ'ର ଶ୍ରବଣ ଦୁଆରେ ରହି,
ଶୁଣିବାକୁ ତୁମ ଅମୃତ ଗାନ, ବିଶ୍ୱ ଉଠଇ ଗାଇ !
ହେ ମୋର ଦେବତା ! ଭରିଛ ଏ ଦେହେ ପ୍ରାଣ
କି ଅମୃତ ତୁମେ ଚାହଁ କରିବାକୁ ପାନ ?

ତୁମର ସୃଷ୍ଟିସମ୍ଭାର ମୋର ଚିତ୍ତେ
ରଚନା କରିଛି ବିଚିତ୍ର ବାଣୀ କେତେ ।
ତା'ସାଥିରେ ପ୍ରଭୁ ! ମିଶିଛି ତୁମର ପ୍ରୀତି
ଜଗାଇଛି ମୋର ହୃଦୟେ ସକଳ ଗୀତି ।
ମୋ ଭିତରେ ତୁମେ ନିଜକୁ କରିଛ ଦାନ
ଅମୃତ ରସେ ବୁଡ଼ି ରହିବାକୁ ମନ ।
ହେ ମୋର ଦେବତା !
ଭରିଛ ଏ ଦେହେ ପ୍ରାଣ
କି ଅମୃତ ତୁମେ
ଚାହଁ କରିବାକୁ ପାନ ?
ଚାହଁ କରିବାକୁ ପାନ ।

ମୂଳ ଗୀତାଞ୍ଜଳି - ୧୦୧



## ୬୭

ଜୀବନେ ସେ'ଚିରଦିନ,
ରହିଅଛି ଆଭାସେ,
ପ୍ରଭାତର ଆଲୋକେ ଯା'
ଫୁଟେନାହିଁ ପ୍ରକାଶେ,
ଜୀବନର ଶେଷ ଦାନେ
ଜୀବନର ଶେଷ ଗାନେ,
ହେ ଦେବତା, ତାହା ଆଜି
ଅରପିବି ହରଷେ,
ପ୍ରଭାତର ଆଲୋକେ ଯା'
ଫୁଟେ ନାହିଁ ପ୍ରକାଶେ ।

କଥା, ତା'ର ଶେଷ କଲେ
ପାରେ ନାହିଁ ସଜ୍ଜାଇ ।
ଗୀତ, ତା'ର ସୁରଦେଇ
ପାରେ ନାହିଁ ବଜାଇ ।
ନୀରବରେ କି ନିଭୃତେ
ମୋହନ ନବୀନ ରୂପେ,
ନିଖିଳ ନୟନଠାରୁ
ଆବରଣେ ଥିଲା ସେ
ପ୍ରଭାତର ଆଲୋକେ ଯା'
ଫୁଟେ ନାହିଁ ପ୍ରକାଶେ ।

ଭ୍ରମୁଛି ମୁଁ ଦେଶେ ଦେଶେ
ତାକୁ ନେଇ ସାଥିରେ,
ଜୀବନେ ଯା'ଭଙ୍ଗା ଗଢ଼ା
ଘଟେ ସବୁ ଏଥିରେ ।
ସବୁକାମେ ସବୁଭାବେ,
ସଂବୁରି ମଧ୍ୟେ ଏ ଭବେ,
ଶୟନେ ସପନେ ସଦା
ମନେଥାଏ, ଏକା ସେ
ପ୍ରଭାତର ଆଲୋକେ ଯା'
ଫୁଟେ ନାହିଁ ପ୍ରକାଶେ ।

କେତେଦିନ, କେତେ ଲୋକ
ପାଇବାକୁ ତାହାରେ,
ବୃଥା ଫେରିଯାନ୍ତି ସବୁ,
ଆସି ଘର ଦୁଆରେ ।
ନବୁଝନ୍ତି କେହିବାରେ
ଅଛି ମୁହିଁ ପ୍ରତୀକ୍ଷାରେ,
ତୁମ ସାଥେ ହେବ ଭେଟ - ସେଇ ଆଶା ନେଇ ସେ
ସେ ରହିଅଛି ଆପଣାର ଆକାଶେ ।
ପ୍ରଭାତର ଆଲୋକେ ଯା'
ଫୁଟେ ନାହିଁ ପ୍ରକାଶେ
ରହିଅଛି ଆଭାସେ ।

ମୂଳ ଗୀତାଞ୍ଜଳି - ୧୪୯



## ୬୭

ତୁମେ ଅଟ ଅନନ୍ତ ଆକାଶ
ତୁମେ ମଧ୍ୟ ସର୍ଜନାର ନୀଡ଼,
ହେ ସୁନ୍ଦର ! ସେ ନୀଡ଼ରେ-
ରଙ୍ଗେ, ଗନ୍ଧେ, ଶବ୍ଦେ, ତୁମ ପ୍ରେମ,
କରିଥାଏ ଆତ୍ମାକୁ ବନ୍ଧନ ।

ପ୍ରଭାତ ଆସଇ ତହିଁ -
ଦକ୍ଷିଣ ହସ୍ତରେ ଧରି ସୁବର୍ଣ୍ଣ ପେଟିକା,
ସାଇତି ରଖିଛି ସିଏ ସୌନ୍ଦର୍ଯ୍ୟ ମାଳିକା ।
ଆସିଅଛି ନିରବରେ ଧରି,
ଧରଣୀ ରାଣୀକୁ ଏଠି -
ଅଭିଷେକ ସେ କରିବବୋଲି ।।

ପ୍ରଦୋଷ ଆସଇ ନଇଁ -
ଗୋଠହରା ନିର୍ଜନ ସେ ଘାସ ପଡ଼ିଆରେ,
ପଥ ଶୂନ୍ୟ ଚାରଣ ଭୂମିରେ,
ଆଣିଥାଏ ବିଶ୍ରାମର ପଶ୍ଚିମ ସାଗରୁ
ସ୍ୱର୍ଣ୍ଣ କଳସୀରେ ଭରି -
ସୁଶୀତଳ ଶାନ୍ତି ସଲିଳରୁ ।
ଅନନ୍ତ ଆକାଶ ତହିଁ
ବକ୍ଷ ତା'ର କରି ବିସ୍ତାରଣ
ଚାହିଁଥାଏ, ପ୍ରାଣସତ୍ତା,
ରଚିବ ତା' ବିଦାୟ୍ ଉଡ଼ାଣ ।
ପରିବ୍ୟାପ୍ତ ତହିଁ,
ନିଷ୍କଳଙ୍କ ଶୁଭ୍ରତାରେ ସିଏ ପ୍ରଭାମୟୀ ।

ସେଠାରେ ନଥାଏ ଦିନ
ନଥାଏ ବା ରାତି,
ନଥାଏ ରଙ୍ଗ ବିଭବ
ନଥାଏ ଆକୃତି ।
ଅନାହତ ନିଃଶବ୍ଦ ସେ ସୁର
ପ୍ରତୀକ ସେ ମହା ଶୂନ୍ୟତାର ।



## ୬୮

ମୋର ପ୍ରିୟ ଏଧରା ବକ୍ଷରେ-
ତୁମର ସେ ସୂର୍ଯ୍ୟରଶ୍ମି ଆସେ ନଇଁ
ପ୍ରସାରିତ ବାହୁତେଳି ତା'ରେ ।
ଦିନ ଭରି ଦୁଆରେ ମୋ'-
କରେ ସେ ଅପେକ୍ଷା,
ନେଇଯିବ ତୁମ ପଦେ
ମୋ' ଅଶ୍ରୁ-ବାଦଲ ସାଥେ
କେତେ ଶୋକ, ସଙ୍ଗୀତ ମୋ,
ଲଭିବାକୁ ତୁମର ତିତିକ୍ଷା ।
କରେ ସେ ଅପେକ୍ଷା ।

ଶ୍ରଦ୍ଧାମୟ ଉଲ୍ଲାସରେ ହୋଇ ଆହ୍ଲାଦିତ,
ତୁମ ବକ୍ଷ କରିଅଛ, ନକ୍ଷତ୍ର ଖଚିତ ।
କୁଜ୍‌ଟିକାମୟ ମେଘମାଳାର ବିତାନେ
ଅସୁମାର ରୂପନିଏ ତା'ର ଆସ୍ତରଣେ ।
ଘଟେ ନୂଆ ରୂପ ରୂପାନ୍ତର,
ସଦା ପରିବର୍ତ୍ତନୀୟ, ବର୍ଣ୍ଣମୟୀ ରୂପର ସମ୍ଭାର ।
ଏତେ ମୃଦୁ, ଚଳମୟୀ ଛାୟା ମାୟାବତୀ
ଏତେ ସ୍ନିଗ୍ଧ ସକରୁଣ ଅଟେ ରୂପବତୀ !
ଆହେ ପ୍ରଶାନ୍ତ ନିର୍ମଳ !
ସେଥିପାଇଁ ତାକୁ ତୁମେ ପାଅ ଏତେ ଭଲ ?
କୁହ ! ସେଇଥିପାଇଁ କି
ସେ ତୁମକୁ ଢ଼ାଙ୍କିଦିଏ ପଠାଇ ଛାଇକି !
ଲୁଚିଯାଏ ତୁମର ସେ ଭୟଙ୍କର ଧୂସର କିରଣ
ସ୍ନେହଛାୟା ସ୍ପର୍ଶଯେତେ ହେଉବା କରୁଣ ।



# ୬୯

ଏଇ ଯେ ଜୀବନ ସ୍ରୋତ
ବହେ ମୋ ଶରୀରେ
ପ୍ରବାହିତ ହୁଏ ତାହା
ବିଶ୍ୱ ଚରାଚରେ
ତା'ର ଅନାହତ ଧ୍ୱନି,
ତାଳେ ତାଳେ ଯାଏ ଛୁଇଁ
ଜଳ, ସ୍ଥଳ, ଅନ୍ତରୀକ୍ଷ
ଆକାଶ ଅବନୀ ।

ସେ ଜୀବନ,
ପ୍ରବାହିତ ହୋଇ ଉଠେ
ଧୂଳି ବୁକେ ଏ' ଧରା ବକ୍ଷରେ,
ଅତି ଉଲ୍ଲାସରେ ।
ତା' ଭିତରୁ ଜନ୍ମନିଏ
ତୃଣାଙ୍କୁର ତରୁଲତା ରାଜି,
କୋଳାହଳ ହୋଇଉଠେ
ଜୀବନ ଜାହ୍ନବୀ-
ପତ୍ରେ ପତ୍ରେ ଫୁଲ ପାଖୁଡ଼ାରେ,
ଅତି ଉଲ୍ଲାସରେ, ଅସୀମ ସେ -
ବିଭିନ୍ନ ରୂପରେ ।

ଏଇ ସେ ଜୀବନ,
କେଉଁ ଅନାଦି ଓ ଅନନ୍ତକାଳରୁ
ଜନମ ମୃତ୍ୟୁର ସେଇ ସିନ୍ଧୁ ଦୋଳନାରେ,
ଖେଳୁଅଛି ଅବିରତ
ଉଦ୍ଦାମଗତିରେ,
ତା' ତରଙ୍ଗ ଜୁଆର ଭଟାରେ ।

ଏ ବିଶ୍ୱ ଜୀବନେ ଭରା -
ଅଟେ ମୋ ଜୀବନ,
ପଲ୍ଲବିତ ପୁଷ୍କଳିତ
ଅବୟବ ମନ ।
ମୋ ଜୀବନ ସ୍ୱାଭିମାନ -
ଅନନ୍ତ ଯୁଗର,
ମୋ ରକ୍ତରେ ଧାବମାନ
ହୁଏ ନିରନ୍ତର ।
ଏ ଜୀବନ ପ୍ରବାହିତ ହୋଇଉଠେ -
ବିଶ୍ୱ ଜୀବନରେ,
ଅତି ଉଲ୍ଲାସରେ ।।



## ୭୦

ତୁମେକି ନ ପାଅ ସଖା ! ଆନନ୍ଦ, ଏ -
ଛନ୍ଦମୟ ତାଳେ ହଜିବାକୁ ?
ଚାହିଁନିକି ଆନନ୍ଦର ଭୟଙ୍କର
ଭଉଁରୀରେ ପଡ଼ି,
ଚୂର୍ଣ୍ଣୀଭୂତ ଅସ୍ଥିର ହେବାକୁ ?
ତୁମେ ଛନ୍ଦାତୀତ, ତୁମେ ଆନନ୍ଦ ଅତୀତ
ଆହେ କ୍ରୋଧାତୀତ !

ଏ ସଂସାର ......
ସମସ୍ତେ ଚଞ୍ଚଳ ସଦାକ୍ଷିପ୍ର ଗତିଶୀଳ
ଗତି ତାଙ୍କ ପ୍ରଖର ପ୍ରବଳ ।

ପଛକୁ ନଚାହିଁ ଥରେ
ନଅଟକି ପଥପରେ,
ଚାଲିଥାନ୍ତି ଆଗକୁ ଆଗକୁ
ଅଟକାଇ ପାରନ୍ତିନି କେହି କାହାରିକୁ ।

ଅବିଶ୍ରାନ୍ତ ବେଗବତୀ ଛନ୍ଦମୟ ତାଳେ
ନାଚି ନାଚି ଆସିଥାଏ -
ପ୍ରକୃତିର ଋତୁଚକ୍ରେ ହେଳେ ।
ଆସି, ଯାଏ ଚାଲି,
ନେଇଯାଏ ସାଥେ ତା'ର
କେତେ ରଙ୍ଗ, ରାଗଲୟ, ମହକ ପଖାଳି ।
ଛନ୍ଦମୟୀ ବର୍ଣ୍ଣମୟୀ ଚଞ୍ଚଳା ପ୍ରପାତ
ନାଚି ନାଚି ଯାଏ ଚାଲି ବିତରି ଆନନ୍ଦ,
ପ୍ରତି ମୁହୂର୍ତ୍ତରେ,
ଆଗମନ ପ୍ରସ୍ଥାନର ସୁରେ।



# ୭୧

ନିଜ ବଡ଼ପଣ, ନିଜେ ମୁଁ କରୁଛି ପ୍ରକାଶ
ଚିଉଦିଗକୁ ମୁଁ ବିସ୍ତାରି କରେ ବିକାଶ ।
ରଙ୍ଗିନ ଛାୟା ନିକ୍ଷେପି ତୁମ ପ୍ରଭାରେ
ବୁଡ଼ିଅଛି ତୁମ ମାୟାରେ ।

ନିଜର ଯେ ମହାସତ୍ତାରେ ତୁମେ
ବିଭାଜନ ରେଖା ଟାଣିଛ,
ବିଭାଜିତ ସେଇ ସତ୍ତାକୁ ତୁମେ
ବିବିଧ ରୂପରେ ଭରିଛ ।
ମୋ ରୂପଟି, ସେଇ ମହାପ୍ରକାଶର ପ୍ରକାଶ,
ସେଇ ବିଭାଜିତ ରୂପ ବିକାଶ ।

ସୃଜନର ସେଇ ମଧୁସଙ୍ଗୀତ
ଧ୍ୱନିତ ଗଗନେ ପବନେ,
ହସ, କାନ୍ଦ, ଆଶା ନିରାଶାର
ବହୁ ବରଣେ ।
ମୋ ଭିତରେ କେତେ
ତରଙ୍ଗ ଜାଗି ଉଠଇ,
କ୍ଷଣେ ଜାଗି ପୁଣି-
କ୍ଷଣକରେ ତାହା ଲିଭଇ ।
କେତେ ଯେ ସ୍ୱପ୍ନ ଅଙ୍କୁରି ପୁଣି ମଉଳେ
ମୋ ଭିତରେ ତମ ବିଭାଜିତ ସେଇ
ହାରିବାର ରୂପ ଚହଲେ ।

ଦିନ ଓ ରାତିର ତୂଳିକାରେ ତୋଳି
ଅସୁମାର ରଙ୍ଗ ପ୍ରଲେପ,
ମାୟା ମଞ୍ଚର ଯବନିକ ବୁକେ
ଆଙ୍କିଛି ରୂପ ଅନେକ ।
ପର୍ଦ୍ଦା ପଛରେ ତୁମରି ସିଂହାସନଟି,
ନିର୍ମିତ ତାହା, ବିସ୍ମୟ ଭରା, ରହସ୍ୟମୟ
ବକ୍ରିଳ ରେଖା ଗାରେଟି ।
ବନ୍ଧ୍ୟା ସରଳ ରେଖାକୁ
ଦୂରେଇ ଦେଇଛି ଦୂରକୁ ।
ଆମ ଦୁହିଁଙ୍କର ଦୃଶ୍ୟ ସମ୍ଭାର
ବିସ୍ତରି ଉଠେ ଆକାଶେ,
ମିଳିତ କଣ୍ଠ ସ୍ୱର ଝଙ୍କାର
ଶୂନ୍ୟ ବୁକୁରେ ସ୍ପନ୍ଦିତ ହୁଏ ହରଷେ ।
ଯୁଗ ଯୁଗ ଧରି ଚାଲିଛି,
ଆମ ଦୁହିଁଙ୍କର
ଲୁଚକାଳି ଖେଳ
କିଏ ବା ପାରୁଛି ମୁରୁଛି ।



# ୭୨

ସିଏ......

ସିଏ  ମୋ ଅନ୍ତରତମ
ଯା'ର ପ୍ରଚ୍ଛନ୍ନ ନିବିଡ଼ ସ୍ପର୍ଶେ
ମୋ ସତ୍ତାର ହୁଏ ଉତ୍ତରଣ ।

ସିଏ.....

ଦେଇଛନ୍ତି ନେତ୍ରେ ମୋର
କୁହୁକ ପରଶ,
ହୃଦୟ ତନ୍ତ୍ରୀର ତାରେ ତୋଳିଛନ୍ତି
କେତେ ସ୍ୱରରାଗ-
ସକରୁଣ ଆନନ୍ଦ ଉଲ୍ଲାସ ।

ସିଏ ବୁଣିଛନ୍ତି,
ମାୟାର ସେ ବୁଢ଼ିଆଣୀ ଜାଲ-
କେତେ ଅଦୃଶ୍ୟ ରଙ୍ଗରେ
ସୁବର୍ଣ୍ଣ ରଜତ ଶୁଭ୍ର
ସବୁଜ ସୁନୀଳେ ।
ପଦ ଫାଙ୍କେ ସେ ମାରନ୍ତି ଉଙ୍କି
ଯା'ପରଶେ ଭୁଲେ ମୁହିଁ ନିଜ ସତ୍ତାଟିକି ।

ଦିନ ମାସ ବର୍ଷ ଯୁଗ ହୋଇଯାଏ ପାର
ବହୁନାମେ ଅଲକ୍ଷ୍ୟରେ ହୃଦୟରେ କରନ୍ତି ବିହାର
ହୃଦୟ ବିହାରୀ !
ଏ ଜୀବନେ ସୁଖେ ଦୁଃଖେପାଖେ ପାଖେ
ଥାନ୍ତି ସଖାପରି ।।



## ୭୩

ସଂସାର ବୈରାଗ୍ୟେ ମୋତେ
ମିଳେନାହିଁ ମୁକ୍ତିର ସଂଧାନ
ମୁକ୍ତିର ପରଶ ଦିଏ
ଆନନ୍ଦର ଅଜସ୍ର ବଂଧନ ।
ଭରିଦିଅ ମୋର ପ୍ରଭୁ !
ଏ ଜୀବନ ମାଟିର କଳସୀ
କେତେ ରଙ୍ଗେ ମହକରେ
ହୃଦୟେ ମୋ ଅମୃତ ପରଶି ।
ତୁମର ପ୍ରଦୀପାଲୋକେ ଜଳାଇବି
ଅସୁମାର ପ୍ରଦୀପ ମୋ'ର,
ଥାପିବି ମୁଁ ପୂଜାପୀଠେ
ଖୋଲି ତୁମ ମନ୍ଦିର ଦୁଆର ।
ମୋ ଇନ୍ଦ୍ରିୟ ଦ୍ୱାର ସବୁ
ଅବରୁଦ୍ଧ କରିବିନି କେବେ
ଦର୍ଶନ, ଶ୍ରବଣ, ସ୍ପର୍ଶ ଆନନ୍ଦକୁ ତୁମ
ଆନନ୍ଦେ ମୁଁ ଲଭେ ।
ଜୀବନର ମାୟା ମୋହ ହେଉ ରୂପାନ୍ତର
ଆନନ୍ଦର ଆଲୋକେ ତୁମର ।
ଅସରନ୍ତି ବିବିକ୍ତ ବାସନା
ପ୍ରେମେ ପରିଣତ ହେଉ
ଏହା ମୋ କାମନା ।।



# ୭୪

ନାହିଁରେ ଆଉ ବେଳ
ପୃଥିବୀ ପରେ ଅସ୍ତରାଗ
ହେଲାଣି ଝଲ ମଲ ।
ଚାଲରେ ଘଟେ, କଳସୀ ଯିବା ଧରି
ଆଣିବା ପାଣି ଭରି ।

ଉଚ୍ଛଳିତ ଜଳର କଳତାନ,
ଆକୁଳକରେ ସନ୍ଧ୍ୟା ସମୀରଣ ।
ଯିବାକୁ ମୋତେ ଡାକୁଛି ଥିରି ଥିରି
ଚାଲରେ ଘାଟେ, କଳସୀଟିକୁ ଧରି
ଆଣିବା ପାଣିଭରି ।
ଗୋଧୂଳି ସଞ୍ଜ
ବିଜନ ଏଇ ପଥ,
କେହିତ କରୁନାହାନ୍ତି ଯାତାୟତ ।
ପ୍ରଣୟ ନଦୀ, ଉଦ୍‌ବେଳିତ ଢ଼େଉ
ବହୁଛି ବୁକେ ଉଦାମ ସେ ବାୟୁ ।
ଜାଣିନି ଆଉ ଫେରିବିକିନା ଘରେ
କା' ସାଥେ ଦେଖା ହେବକି ନାହିଁବାରେ ।

ଅଜଣା ବୀଣା ବାଜୁଛି ତରଣିରେ
ବଜାଏ କିଏ ବସିଣ ସେ ଘାଟରେ ।
ଚାଲରେ ଯିବା କଳସୀ କାଖେ ଧରି
ଆଣିବା ପାଣିଭରି...ଆଣିବା ପାଣି ଭରି ।।

ମୂଳ ଗୀତାଞ୍ଜଳି - ୨୬



# ୬୫

ପ୍ରଭୁହେ !

ଅସୁମାର ଅଟେ ତୁମର ମହାନ୍ ଦାନ
ଭରିଅଛ ତାହା ଅନନ୍ତ ବିଶ୍ୱପ୍ରାଣ ।
ସକଳ ଅଭାବ ପୂରଣ କରି ତା'-
ଫେରିଯାଏ ପାଶେ ତୁମ ।
ତୁମର ମହାନ୍ ଦାନ ।

ଏ ଧରଣୀ ବୁକେ ବହିଯାଏ ନଦୀଧାର
ପ୍ରବାହ ଅଟଇ ନିତିଦିନ କାମ ତା'ର,
ଗ୍ରାମେ, ବଣେ, ବିଲେ, ଘୂରି
ବିତରଇ ତା'ର ଅମୃତସମ ବାରି ।
ଲକ୍ଷ୍ୟ କିନ୍ତୁ ତା' ତୁମରି ପଦରେ ପ୍ରଭୁ !
ଧୋଇ ଦେବ ବୋଲି ଧାଇଁଥାଏ ଛାଡ଼ି ସବୁ ।

ବନେ ବନେ ଫୁଟି
ଚହଟେ ଫୁଲର ଶିରୀ,
ମତୁଆଲା ତା'ର ମଧୁ ମହକରେ
ପବନକୁ ଦିଏ ଭରି ।
ତଥାପି ସେଥିରେ ତୃପ୍ତି ମିଳେନା ତାକୁ
ଚାହିଁ ରହିଥାଏ, ତୁମରି ପଦରେ
ନିଜକୁ ଅରପିବାକୁ ।

ଚାଲିଅଛି କେଉଁ ଅନନ୍ତକାଳୁ ସିନା
କେତେ ଉପାସନା ତମପୂଜା ଆରାଧନା ।
ଦରିଦ୍ର କେବେ ହୋଇ ଯାଇନାହିଁ ଧରା
ପ୍ରଭୁ ! ତୁମରି ପୂଜାରେ ପରା ।

କବିର କବିତା ....
ଯେବୁନ୍ଥୁ ଯେପରି ଭାବେ
ଯେଉଁ ପରି ଭଲ ଲାଗେ ।
କିନ୍ତୁ ତାହାର
ଅସଲ ଅର୍ଥ ସବୁ
ଲକ୍ଷ୍ୟ କରିଛି
ତୁମକୁ ଏକା ହେ ପ୍ରଭୁ !
ତୁମକୁ ଏକା ହେ ପ୍ରଭୁ !



## ୭୬

ଦିନ ଦିନ ଧରି ମୁହିଁ ଆହେ ପ୍ରାଣ ସଖା !
ତୁମ ସିଂହାସନ ପାଶେ ହାତଯୋଡ଼ି ଏକା,
ଛିଡ଼ା ହୋଇଥିବି ପ୍ରଭୁ ! ତୁମ ସମ୍ମୁଖରେ
ଶ୍ରୀ ମୁଖକୁ ଦେଖୁଥିବି ବିହ୍ୱଳ ନେତ୍ରରେ ?

ନିସୀମ ଆକାଶ ତୁମ -
ତା' ତଳରେ ମୁହିଁ,
ନିର୍ଜନେ ନିରବେ ଛିଡ଼ା ହୋଇଥିବି ତହିଁ ।
ହାତ ଯୋଡ଼ି ବିନୀତ ହୃଦୟେ
ସମ୍ମୁଖରୁ ଚାହିଁଥିବି ଶ୍ରୀମୁଖକୁ
ପ୍ରଭୁ ଏକଲୟେ ।

କର୍ମ କୋଳାହଳମୟ
ତୁମର ଏ ବିପୁଳ ପୃଥିବୀ,
ସଂଘର୍ଷ ଓ ଶ୍ରମକ୍ଳାନ୍ତ
ଜନେ ସର୍ବେ ଏଥି ।
କା'ର ଟିକେ ନଥାଏ ଅସର
ଚାଲୁଥାନ୍ତି ହୋଇ ତର ତର ।
ସେମାନଙ୍କ ମଧ୍ୟେ ସଖା ସମ୍ମୁଖରେ ମୁହିଁ
ଯୋଡ଼ହସ୍ତେ ଶ୍ରୀମୁଖକୁ ସତେଥିବି ଚାହିଁ ?
ହେ ବିଶ୍ୱ ସମ୍ରାଟ !
ଯେତେବେଳେ ଏଧରାରେ
ମୋର କାମ ହେବ ସମାପତ,
ନିର୍ବାକେ ନିରବେ,
ମୁଁ କି ଉଭା ହୋଇଥିବି
ଯୋଡ଼ହସ୍ତେ, ତୁମରି ସମ୍ମୁଖେ ?



## ୭୭

ଜାଣିଛି ତୁମେ ଅଟ ମୋ 'ପ୍ରଭୁ'
ହୁଏ ମୁଁ ଛିଡ଼ା ଦୂରେ,
ଜାଣେନି ଏତେ ନିଜର ବୋଲି
ଆସେ ନି ନିକଟରେ ।
ଜାଣଇ ତୁମେ ଅଟ ମୋ 'ପିତା'
ଚରଣେ ହୁଏ ନତ,
ବନ୍ଧୁ ଭାବି, ପାରିନି ଧରି
କେବେ ମୁଁ ତୁମ ହାତ ।

ଯେଉଁଠେ ତୁମେ ନ ଆସ ପାଖେ
ଆନନ୍ଦରେ, ନିଜର ଭାବି ମୋତେ,
ସେଠାରୁ ମୁହିଁ ଦୂରେଇ ରହେ,
ନିବିଡ଼ ହୃଦଗତେ,
ପାରେନି ମୁହିଁ ଆଲିଙ୍ଗନ କରି
ନିବିଡ଼ତମ ପ୍ରାଣର ବନ୍ଧୁ ବୋଲି ।

ଜଗତଜନ ଭ୍ରାତୃଗଣେ
ଶ୍ରେଷ୍ଠ ତୁମେ ସଖା !
କାହାରି କଥା ଶୁଣିନି କେବେ, କରିଛି ଅଣଦେଖା
କାହାରି ହାତେ ଦେଇନି କିଛି ଧନ,
ଦୁଃଖକା'ର କରିନି ଦୂର
ନେଇନି କା'ର ମନ ।
ତମରି ସାଥେ ଭୋଗିବି ବୋଲି ଏକା ।
ସଞ୍ଚୟ ମୁଁ କରିଛି ସବୁ ସଖା ।

କା'ଦୁଃଖେ ସୁଖେ, କାହାର ପାଶେ
ହୋଇନି କେବେ ଛିଡ଼ା
ତମରି ଲୟେ ରହିଛି ସଦା
ଶମି ନି କା'ର ପୀଡ଼ା ।
କୁଣ୍ଠା ଭରେ ଜୀବନ ମମ
କରିନି ସମର୍ପଣ
ଜୀବନମହାସିନ୍ଧୁ ଜଳେ,
ନିଜକୁ ମୁହିଁ, କରିନି ବିସର୍ଜନ ।।



# ୬୮

ସର୍ଜନାର ନୂତନ ବେଳାରେ,
ଆଲୋକର ବନ୍ୟା ତୋଳି ତାରକାମଣ୍ଡଳ -
ନୂଆକରି ହସୁଥାନ୍ତି,
ନୀଳ ଆକାଶରେ ।
ଦେବ ଦରବାରେ ବସି
ସର୍ବଦେବ ଗଣ,
ଦେବ ସଭା ଚାଲିଥାଏ
ସୃଷ୍ଟିର ପ୍ରଥମ ।
ଗାଉଥାନ୍ତି ଏକସ୍ୱରେ
ହୋଇଣ ହରଷ
'ପରମାନନ୍ଦର ଏହା -
ପରିପୂର୍ଣ୍ଣ ପରମ ପ୍ରକାଶ ।"

ଏଁ !!
କିଏ ପୁଣି କରୁଚି ଚିତ୍କାର ?
'ମନେହୁଏ ବିଚ୍ୟୁତି ଘଟିଛି କାହିଁ
ଆଲୋକମାଳାର,
ହଜି ଯାଇଅଛି କାହିଁ
ଗୋଟିଏ ତାରକା
ଆକାଶ ମଣ୍ଡଳ ଜ୍ୟୋତି
ପଡ଼ିଅଛି ଫିକା " ।
ସୁବର୍ଣ୍ଣ ବୀଣାର ତାର ଛିଣ୍ଡିଗଲା
ଦେବ ଗଣଙ୍କର

ବନ୍ଦ ହୋଇଗଲା ତାଙ୍କ
ସଙ୍ଗୀତ ଆସର ।
ନୈରାଶ୍ୟର ଛାଇ ଗଲା ଘୋଟି,
ସମସ୍ତେ କହିଲେ ଦୁଃଖେ,
ହଜିଅଛି ତାରକା ମଣିଟି ।
ସିଏ ଥିଲା ସର୍ବଶ୍ରେଷ୍ଠ
ଜ୍ୟୋତିର ଦ୍ୟୋତକ
ସରଗପୁରୀର ଥିଲା -
ଏକମାତ୍ର ଗର୍ବ ଗଉରବ ।"

ସେଇଦିନୁ ଚାଲିଅଛି
ସେ ମଣିକୁ ଖୋଜା,
ଏଯାଏ ମିଳିନି ତାହା, କରିଅଛି-
ସର୍ବେ ଦିଗହଜା ।
ସମସ୍ତେ କହନ୍ତି ତୋଳି ଗଭୀର ବିଷାଦ
ହଜି ଯାଇଅଛି ଆଜି ସୃଷ୍ଟିର ଆନନ୍ଦ ।
ରାତ୍ର ଘନ ନିସ୍ତବ୍ଧତା ଘୋଟଇ ଆକାଶେ
ହସନ୍ତି ତାରକାଗଣ ଉଜ୍ଜ୍ୱଳ ପ୍ରକାଶେ ।
କହନ୍ତି ସେ ଚୁପି ଚୁପି, 'ବ୍ୟର୍ଥ ଅନ୍ୱେଷଣ
ଅନାହତ ସୃଷ୍ଟିଛନ୍ଦ, ପରିପୂର୍ଣ୍ଣତାରେ ଏହା
ଅଟେ ପୂର୍ଣ୍ଣତମ ।
ଅଟେ ପୂର୍ଣ୍ଣତମ ।



# ୭୯

ତୁମ ଦେଖା ଯଦି ନମିଳିବ ପ୍ରଭୁ ! ଜୀବନେ
'ଦରଶନୁ ଚିର ବଞ୍ଚିତ ବୋଲି'-
ରହୁ ଅନୁକ୍ଷଣେ ମୋ ମନେ,
ମର୍ମ ବେଦନା ନଭୁଲେ ମୁଁ କେବେ
ଜାଗରଣେ ଅବା ସପନେ ।
ତୁମ ଦେଖା ଯଦି....

ଏଭବ ହାଟର ଯେତେଦିନ-
ମୁହିଁ ବଣିକ,
ମୋ ହାତକୁ ଆସୁ ଯେତେଅବା
ଧନ ଅଧିକ ।
ଏଇ କଥା ଗୋଟି ରହିଥାଉ -
ସଦା ମୋ ମନେ,
'କିଛି ମୁଁ ପାଇନି ଜୀବନେ' ।
କ୍ଷଣକ ପାଇଁକି ଭୁଲି ନଯାଏ ମୁଁ
ଜାଗରଣେ ଅବା ସପନେ ।

ବସିଯାଏ ଯଦି ପଥଧାରେ ହୋଇ -
କ୍ଳାନ୍ତ ଅଥବା ଅବଶ,
ଏ'ଧରା ତଳପେ ପଖାଳି ତନୁରେ
ମାଖି ଦିଏ ଧୂଳି ପରଶ ।
ଭୁଲି ନଯାଏ ମୁଁ ବହୁ ପଥ ଅଛି ଯିବାକୁ,
କ୍ଷଣିକ ପାଇଁକି ପାସୋରି ନଯାଏ ତୁମକୁ ।
ଜାଗରଣେ ଅବା ସପନେ
ମର୍ମ ବେଦନା ନଭୁଲେ ମୁଁ
କେବେ ଜୀବନେ ।

ମୋ ଘର ଯେବେ ରୂପରଭାରେ
ହୁଅଇ ଝଲମଲ,
ଉଛୁଳୁ ଥାଏ ହସର ନଈ
ଆନନ୍ଦ କୋଳାହଳ ।
ବାଜଇ ଯଦି ବଂଶୀ ତୋଳି ତାନ,
ହଜାଇ ଦିଏ ମଜାଇ ଦିଏ ମନ,
ମନେ ମୋ ରହୁ,
'ପ୍ରଭୁଙ୍କୁ ମୋର କରିନି ନିମନ୍ତ୍ରଣ ।'
ପରାଣ ପ୍ରିୟ ଦର୍ଶନ ମୁଁ,
ଜୀବନେ ପାଇ ନାହିଁ,
ଜୀବନେ ପାଇ ନାହିଁ ।।

ମୂଳଗୀତାଞ୍ଜଳି - ୨୪



## ୮୦

ହେ ସୂର୍ଯ୍ୟ ମହିମାମୟ ଚିର ଦୀପ୍ତିମାନ
ଶରତର ଛିଣ୍ଡା, ଛିଣ୍ଡା ଭସା ମେଘ ସମ,
ଅବିଶ୍ରାନ୍ତେ ଭାସେ ମୁହିଁ ଅନନ୍ତ ଆକାଶେ
ଶୁଖିନି ମୋ ଜଳକଣା, ତୁମରି ପରଶେ
ହେବି ଏକାକାର,
ମିଶିଯିବି ବୋଲି ମହାଆଲୋକେ ତୁମର ।
ତୁମଠାରୁ ରହି ବହୁଦୂରେ,
ଚାହିଁଛି ମୁଁ ମାସ ବର୍ଷ ଦୀର୍ଘ ପ୍ରତୀକ୍ଷାରେ ।

ଏହା ଯଦି ତୁମଇଚ୍ଛା ଅଟେ ତୁମ ଖେଳ,
ନେଇ ଯାଅ ତେବେ ପ୍ରଭୁ !
ଭଙ୍ଗୁର ଏ ଜୀବନର ଶୂନ୍ୟତାକୁ ମୋର ।
ବହୁବର୍ଣ୍ଣେ କର ହେ ଚିତ୍ରିତ
ସ୍ୱର୍ଣ୍ଣ ଆବରଣେ ସଖା ! କର ତାକୁ ସୁବର୍ଣ୍ଣମଣ୍ଡିତ
ଛାଡିଦିଅ ଅଶାନ୍ତ ପବନେ,
ଭାସିଯାଉ -
ବିବିଧ ରହସ୍ୟମୟ ବିପୁଳ ବିତାନେ ।
ନିଶିଥରେ -
ଯେତେବେଳେ ଇଚ୍ଛା ହେବ ସାରିବାକୁ ଖେଳ,
ଆଦରିବି ଆନନ୍ଦରେ ସେ ରାତ୍ରିର ଘନ ଅନ୍ଧକାର ।
ଅଥବା
ଶାନ୍ତ-ସ୍ନିଗ୍ଧ ଶୁଦ୍ଧମୟ ସ୍ୱଚ୍ଛ ପରିବେଶେ,
ଶୁଭ୍ରମୟୀ ପ୍ରଭାତର ହସେ
ଏକାକାର ହୋଇଯିବି ମୁହିଁ,
ପାଇତବ ଶେଷ ସ୍ପର୍ଶ ତହିଁ ।।



# ୮୧

ଅପରନ୍ତି ଅଳସ ମୁହୂର୍ତ୍ତେ
ହୋଇଛିକି ବ୍ୟଥିତ ମୁଁ କେବେ,
ଅତୀତରେ ସମୟକୁ -
ହଜାଇଛି ବୋଲି ?
ଏହା କିନ୍ତୁ ହଜିନାହିଁ ପ୍ରଭୁ !
ମୋ ଜୀବନ ପ୍ରତ୍ୟେକ ମୁହୂର୍ତ୍ତ
ତୁମେ ତୁମ ହାତେ ନେଇଅଛ ତୋଳି ।

ସଂସାରର ସବୁ ଦ୍ରବ୍ୟେ ରହିଅଛ ଭରି
ତା'ର ସେଇ ଅନ୍ତର ଆବୋରି ।
ପରିପୁଷ୍ଟ କରିତୁମେ
ବୀଜଟିକୁ କର ଅଙ୍କୁରିତ,
ସୁକୁମାର କଳିଟିକୁ
ତୁମେ ପ୍ରଭୁ ! କରିଛ ପୁଷ୍ପିତ ।
ଫୁଲଟିକୁ ବିକଶିତ କରିଛ ଫଳରେ
ଭରି ଦେଇ ତାକୁ ପୂର୍ଣ୍ଣତାରେ ।

ଅଳସ ଶଯ୍ୟାରେ ଯେବେ
କ୍ଳାନ୍ତିଭରେ ମୁଦେ ମୁଁ ନୟନ
ମନକୁ ଆସଇ ମୋର -
ସବୁକାମ ସରିଗଲା କ'ଣ !
ପ୍ରଭାତରେ ଉଠି ଦେଖେ
ମୋ ଉଦ୍ୟାନ ଅଟେ ଭରପୂର -
ଅଦ୍ଭୁତ ସେ ପୁଷ୍ପର ସମ୍ଭାର ।।



# ୮୨

ପ୍ରଭୁ, ବିଶ୍ୱର ଈଶ୍ୱର !
ତୁମେ ଜାଣ ଏକା ତୁମ ସୃଷ୍ଟିର ବେଭାର ।
ତୁମ ହାତେ ସମୟ ଅନନ୍ତ,
କେ ନାହିଁ ଜଗତେ ପ୍ରଭୁ ! ଗଣିବାକୁ
ତୁମର ସେ କାଳର, ମୁହୂର୍ତ୍ତ ।।

ଯୁଗ ଆସେ ଯୁଗ ଯାଏ -
ଫୁଲପରି ଫୁଟି ଓ ମଉଳି,
ଦିନରାତି କେତେ ଏଇଭଳି ।
ତୁମେ ଜାଣ ଏକା,
କରିବାକୁ କିପରି ପ୍ରତୀକ୍ଷା ।

ଅନାବନା ଫୁଲଟିଏ
ଫୁଟାଇବା ପାଇଁ
ଶତାବ୍ଦୀ ଶତାବ୍ଦୀ ତୁମେ
ରହିଥାଅ ଚାହିଁ,
ସର୍ଜନାର ଆହେ ରୂପକାର !
ସୃଷ୍ଟିକୁ କରିବ ବୋଲି
ପରିପୂର୍ଣ୍ଣ ସର୍ବାଙ୍ଗ ସୁନ୍ଦର ।

ନଷ୍ଟ କରିବାକୁ କେବେ
ଆମ ହାତେ ନଥାଏ ସମୟ
ସୁଯୋଗ ମୁହୂର୍ତ୍ତ କାଳେ ଚାଲିଯିବ
ମନ ସଦା, ହୁଅଇ ଅଥୟ ।
ସଜାଗ ସରବେ,
ହାତଛଡ଼ା କରି ବେନି -
ସୁଯୋଗକୁ କେବେ ।

ଏପରି ଯେ ମୂଲ୍ୟବାନ
ସମୟଟି ମୋର
ବିତିଥାଏ ଅଯଥାରେ
ଅସନ୍ତୋଷେ, କଳହ ମୁଖର ।
ତୁମ ପୂଜାର ମଣ୍ଡପ
ଶୂନ୍ୟ ପଡ଼ିଥାଏ ପ୍ରଭୁ ! ପୂଜାର୍ଚ୍ଚନା,
ଫୁଲ, ଧୂପ, ଦୀପ ।

ଦିବା ଶେଷେ ଦଉଡ଼େ ମୁଁ
ମୋ ମନ ଅସ୍ଥିର
କାଳେ ବନ୍ଦ ହୋଇଯିବ
ଦେଉଳ ଦୁଆର ।
ତୁଟିଯାଏ ଭୟ !
ବାକି ଅଛି ତଥାପି ସମୟ ।
ତଥାପି ସମୟ ।।



# ୮୩

ତୁମ ସୁନାଥାଳେ ସଜାଇବି ଆଣି
ଦୁଃଖର ଅଶ୍ରୁଧାର,
ଜନନୀ ଗୋ ! ମୁହିଁ ଗୁଛିବି ତୁମ
ଗଳାର ମୁକୁତା ହାର ।
ଚନ୍ଦ୍ର ସୂର୍ଯ୍ୟ ପଦତଳେ ତୁମ,
ଲମ୍ବିଛନ୍ତି ଗୋ ! ଗଳାମାଳ ସମ,
ତୁମରି ବୁକୁରେ ଶୋଭା ପାଇବ ମୋ
ଦୁଃଖର ଅଳଙ୍କାର
ତୁମ ସୁନାଥାଳେ ସଜାଇବି ଆଜି
ଦୁଃଖର ଅଶ୍ରୁଧାର ।

ଯା'କିଛି ଦରବ ଯଶ ଗଉରବ
ସବୁତ ତୁମରି ଦାନ,
ଦେଲେ ଦିଅ ଯାହା
ନେଲେ ନିଅ ତାହା
ନାହିଁ ମୋର ଅଭିମାନ ।
ଦୁଃଖଟି କିନ୍ତୁ ନିଜେ ଅରଜିଛି ମୁହିଁ
ତା ବ୍ୟତୀତ ପ୍ରଭୁ ! ଆପଣାର ବୋଲି -
ଆଉ କିଛି ମୋର ନାହିଁ ।
ତୁମ ପଦେ ତାହା କଲେ ମୁଁ ସମର୍ପଣ,
ଗର୍ବିତ ମୋତେ କରିଥାଏ ପ୍ରଭୁ !
ତୁମରି କରୁଣା ଦାନ ।।

ମୂଳ ଗୀତାଞ୍ଜଳି - ୧୦



# ୮୪

ଚତୁଃର୍ଦ୍ଦିଗେ ବିଚ୍ଛେଦର ସ୍ୱର
ବିରହ ଯନ୍ତ୍ରଣା ସଦା ବିଶ୍ୱପ୍ରାଣ -
କରୁଛି ଅସ୍ଥିର,
ଅନନ୍ତ ଆକାଶେ -
ବିଚ୍ଛିନ୍ନତା ରୂପନିଏ
ବିପୁଳ ପ୍ରକାଶେ ।

ତାରାମୟୀ ଆକାଶ ମଣ୍ଡଳେ
ବିସ୍ତାରିତ ବିଚ୍ଛେଦ କଷଣ,
ନିରବରେ ଚାହିଁଥାଏ
ଏ ତାରାରୁ ସେ ତାରାକୁ ପୁଣ ।
ଶ୍ରାବଣର ବର୍ଷଣ ସନ୍ଧ୍ୟାରେ
ତାହା ପୁଣି ହୁଏ ପରିଣତ
ବୃକ୍ଷବୀଥି ପତ୍ରଝରା ମର୍ମର ସଙ୍ଗୀତ ।

ଏ ବିଶ୍ୱର ପ୍ରତ୍ୟେକ କୁଟୀରେ
ପରିବ୍ୟାପ୍ତ ବିଚ୍ଛେଦ ଯନ୍ତ୍ରଣା,
ପରିଣତ ହୁଏ ଏହା ଦୁଃଖ ଆନନ୍ଦରେ
ଘନୀଭୂତ ହୁଏ ପୁଣି ପ୍ରେମ ବାସନାରେ ।
ସଙ୍ଗୀତରେ ଦ୍ରବୀଭୂତ ହୋଇ ସେଇ ସ୍ୱର
ପ୍ରବାହିତ ହୁଏ ଭରି ମୋ କବି ଅନ୍ତର ।।



# ୮୫

ପ୍ରଭୁଙ୍କ ପୁରରୁ ଆସିଲେ ଯେଦିନ
ସେ ବୀରଦଳ,
କେଉଁଠେ ସେଦିନ ଲୁଚିଥିଲା ତାଙ୍କ
ଅମିତ ବଳ ।
କେଉଁଠାରେ ଥିଲା ବର୍ମ ତାଙ୍କର
ଅସ୍ତ୍ରରାଜି !
ଅଧୀରେ କାହିଁକି ପଡୁଥିଲେ ସିଏ
ଦୁଃଖେଭାଜି ?

ଦେଖାଯାଉଥିଲେ ଦରିଦ୍ରକ୍ଷୀଣ
କି ଅସହାୟ,
ଚଉଦିଗୁ ତାଙ୍କୁ ମାଡ଼ି ଆସୁଥିଲା
ଅସ୍ତ୍ର ଭୟ ।
କାହିଁ ଲୁଚିଗଲା ସେଦିନ ତାଙ୍କର
ଅମିତ ବଳ
ପ୍ରଭୁଙ୍କ ପୁରରୁ ଆସିଲେ ଯେଦିନ
ସେ ବୀରଦଳ ।

ବାହୁଡ଼ିଲେ ଯେବେ ପ୍ରଭୁଙ୍କ ପୁରକୁ
ସେ ବୀରଦଳ
ସେଦିନ କେଉଁଠେ ଲୁଚାଇଲେ ତାଙ୍କ
ବିପୁଳ ବଳ !

କାହିଁ ଗଲା ଚାଲି ଧନୁଶର ହାତୁ
ଶାଣିତ ଅସି ।
ଲଲାଟରେ ତାଙ୍କ ଶାନ୍ତିର ହସ
ଉଠିଲା ହସି ।
କାହିଁ ଗଲା ତାଙ୍କ ଅମିତ ବଳ ?
ଛାଡ଼ିଗଲେ ପଛେ ସାରା ଜୀବନର
ସକଳ ଫଳ ।
ପ୍ରଭୁଙ୍କ ପୁରକୁ ବାହୁଡ଼ିଲେ ଯେବେ
ସେ ବୀରଦଳ
ସେ ବୀରଦଳ ।

ମୂଳ ଗୀତାଞ୍ଜଳି - ୧୨୩



## ୮୬

ହେ କରାଳ କାଳ !
ଅତିକ୍ରମି ଅଜ୍ଞାତ ସାଗର -
ଆସିଛନ୍ତି ମୋ କୁଟୀରେ
ମହାଦୂତ ତୁମ,
ଉଭା ହୋଇଛନ୍ତି ଦ୍ୱାରେ, ଦେବେ ବୋଲି
ତବ ନିମନ୍ତ୍ରଣ ।

ଘନ ଏଇ ଅନ୍ଧକାର ରାତି
ଭୟେ ମୋର ଥରୁଅଛି ଛାତି ।
ତଥାପି ମୁଁ ଦୀପଟିଏ ଧରି
ମୋ'ଦୁଆର ଦେବି ତାଙ୍କୁ ଖୋଲି -
କରି ସମ୍ଭାଷଣ,
ତାଙ୍କ ପଦେ ଜଣାଇ ପ୍ରଣାମ ।

ମୁଁ ତାଙ୍କୁ ପୂଜିବି ବସି ଯୋଡ଼ହସ୍ତେ
ଲୋତକ ନୟନେ,
ସମର୍ପି ହୃଦୟ ନିଧି ମୋ ଜୀବନ
ତାଙ୍କ ଶ୍ରୀଚରଣେ ।
ସରିଛି ତାଙ୍କର କାମ ସେ ଯିବେ ବାହୁଡ଼ି
ଢ଼ାଙ୍କି ଦେଇ ମୋ ପ୍ରଭାତେ
ଘନାୟିତ ଛାଇର କୁହୁଡ଼ି !
କେବଳ ମୋ' ନିର୍ଜନ କୁଟୀରେ
ପଡ଼ିଥିବ ପରିତ୍ୟକ୍ତ ସତ୍ତା ମୋ' ଶରୀର,
ସମର୍ପିତ ହେବ ତାହା ତୁମ ଶ୍ରୀଚରଣେ
ଏହା ମୋର 'ଶେଷ ଉପହାର' ।



## ୮୭

ଏ ହୃଦୟ ହୁଅଇ ମଥିତ
ନୈରାଶ୍ୟରେ ହୋଇ ଜର୍ଜରିତ ।
ମୋ ଘରର କୋଣେ କୋଣେ -
ଖୋଜୁଅଛି ଶ୍ରୀମୟୀଙ୍କୁ ମୁହିଁ,
ତଥାପି ମୁଁ ତାଙ୍କୁ ପାଉନାହିଁ ।

ମୋ କୁଟୀର ଅଟେ କ୍ଷୁଦ୍ରତର
ଥରେ ହଜିଗଲେ କିଛି -
ନମିଳଇ ସଂଧାନ ତାହାର ।
ତୁମର ଭବନ ପ୍ରଭୁ! କି ବିଶାଳ ଅନନ୍ତ ଅସୀମ,
ତାଙ୍କୁ ଖୋଜିବାକୁ ମୁହିଁ
ଆସିଅଛି ଏ ପୁରକୁ ତୁମ ।

ସନ୍ଧ୍ୟାକାଶ ସ୍ୱର୍ଣ୍ଣାଭ ସେ ଚନ୍ଦ୍ରାତାପ ତଳେ,
ହୋଇଅଛି ଛିଡ଼ା ମୁହିଁ ଆବେଗେ ଆକୁଳେ -
ତବ ଶ୍ରୀମୁଖକୁ ଚାହିଁ,
ବ୍ୟଗ୍ରତାରେ ମୁହିଁ ।

ଚିରନ୍ତନ ପୁର ପ୍ରାନ୍ତେ, ଉଭା ମୁହିଁ ଏବେ
ଯେଉଁଠାରେ କିଛିମାତ୍ର ହଜେନାହିଁ କେବେ ।
ଅଶ୍ରୁବୋଳା ଶ୍ରୀମୁଖ ଦର୍ଶନ,
ଆଶା, କିବା ଆନନ୍ଦର ଅଭିବ୍ୟକ୍ତି ମାନ -
କିଛି ହଜେ ନାହିଁ,
ଚିରନ୍ତନ ପୁର ପ୍ରାନ୍ତେ, ଉଭା ଅଟେ ମୁହିଁ ।

ଏଶୂନ୍ୟ ଜୀବନ ପ୍ରଭୁ ! ସେ ମହାସାଗରେ
ନିମଜ୍ଜନ କରତା'ର ଅତଳ ବୁକୁରେ
କର ବିସର୍ଜନ,
ପରିପୂର୍ଣ୍ଣତାରେ ତାହା ହୋଇଯାଉ ଲୀନ ।
ଥରକ ପାଇଁକି ସଖା ! ସେ ହଜିଲା ପରଶ ଅମୃତ
ଅନନ୍ତ ସର୍ଜନା ମଧ୍ୟେ ଅନୁଭବି, ହୁଏ ପୁଲକିତ ।।



# ୮୮

ଭଗ୍ନ ମନ୍ଦିର ଦେବତା ହେ, ତୁମେ ଦେବତା
ଛିନ୍ନ ବୀଣାର ତାର ତୋଳୁ ନାହିଁ -
ତୁମ ପୂଜନର କବିତା ।
ଘଣ୍ଟ ଶଙ୍ଖ ବାଜୁନି ଦେଉଳ ଦୁଆରେ
ଉପାସନା ପାଇଁ ନ ଘୋଷେ ସଞ୍ଜ ସକାଳେ ।
ଶାନ୍ତ ନିରବ ପବନ,
ମୁଖରିତ ଆଉ ହେଉନି, ଭଜନ ପୂଜନ ।

ବସନ୍ତ ପବନ ଛୁଇଁ ଛୁଇଁ ଯାଏ
ଜୀର୍ଣ୍ଣ ମନ୍ଦିର ଚୂଡ଼ାକୁ,
ଫୁଲର ମହକ ମହକାଇ ଦିଏ
ଉଜୁଡ଼ା ଅଲୋଡ଼ା ତା'ବୁକୁ ।
ସେ ଫୁଲ ଆସୁନି ଗଳା ମାଳା ପାଇଁ ତୁମର
ଆଉ ଲୋଡ଼ା ନାହିଁ, ତୁମ ପୂଜା ପାଇଁ -
ସେ ଫୁଲ ।

ଆସନ୍ତି ଆଜିବି କେତେ ଆଶା ନେଇ
ଅତୀତ ଭକ୍ତ ପୂଜକ,
କାମନା ଯାଚନା ପୂର୍ଣ୍ଣ ହୁଏନି
ହଜିଯାଏ ମନୁ ପୁଲକ ।
ଗୋଧୂଳି ଲଗନ ଅନ୍ଧାରେ ଯେବେ
ଆଲୋକ ମିଶଇ ଛାଇରେ
କ୍ଷୁଧିତ ହୃଦୟେ ବ୍ୟଥିତ ଅନ୍ତରେ
ଆସନ୍ତି ହୋଇ ବାଇରେ ।

ଭଗ୍ନ ଦେଉଳ ଦେବତା ହେ !
ଆଜି ସରିଛି,
ପୂଜା ଉତ୍ସବ ପାର୍ବଣ କେବେ
ଆସନ୍ତିନି କେହି ପରଚି ।
କେତେ ଉପାସନା ରାତି ବିତିଯାଏ ବିଫଳେ
ଦୀପଟିଏ ଆଜି ଜଳୁନି ଉଜୁଡ଼ା ଦେଉଳେ ।

କେତେ ଯେ ଶିଳ୍ପୀକଳାରେ କୁଶଳ ଚତୁର,
ନୂଆ ନୂଆ କେତେ ମୂର୍ତ୍ତି ଗଢ଼ନ୍ତି ଅତୁଳ,
ଉପଗତ ହେଲେ ସମୟ,
ବିସ୍ମୃତିର ସେ ପବିତ୍ର ସୁଏ,
ହୁଅନ୍ତି ସେ ପରା ବିଲୟ ।
ଆହେ ଭଗ୍ନ ଦେଉଳ ଦେବତା !
ତୁମେ ତ ରହିଛ ଅପୂଜା
ଅବହେଳାର ସେ ଘନ ଆବର୍ତ୍ତେ
ହୋଇ ଯାଇଅଛ ଅଖୋଜା ।।



# ୮୯

ଏହା ସତେ ପ୍ରଭୁଙ୍କର ଇଚ୍ଛା,
ଶୁଣିବାକୁ ଚାହାନ୍ତିନି ମୋ କଣ୍ଠର
ଉଦାତ୍ତ ଅଭିଖ୍ୟା,
ତେଣୁ ଚୁପି ଚୁପି ମୁହିଁ କରୁଛି ପ୍ରାର୍ଥନା
ତୋଳି କଣ୍ଠେ ସଙ୍ଗୀତର ନିରବ ମୂର୍ଚ୍ଛନା ।

ବ୍ରହ୍ମାଣ୍ଡ ବିପଣୀ ବୁକେ ଚାଲିଅଛି
ବିକାକିଣା, ଗ୍ରାହକଙ୍କ ଗହଳ ଚହଳ,
କର୍ମ ଜଞ୍ଜାଳରେ ମାତି ପାଏନା ବିରତି
ହୋଇଯାଏ ମଧ୍ୟାହ୍ନ ପ୍ରହର ।
ଯେତେବେଳେ ପାଏ ମୁଁ ବିଶ୍ରାମ
ମନେ ପଡ଼େ କରିନାହିଁ ପ୍ରଭୁଙ୍କର କାମ ।

ଅବେଳରେ ମୋ ଉଦ୍ୟାନେ
ପ୍ରସ୍ଫୁଟିତ ହୁଅ ଗୋ କଳିକା,
ଭ୍ରମର ତୋଳନ୍ତୁ ଗୁଣୁ ଗୁଞ୍ଜନ ଗୀତିକା,
ହୁଏ ମୁଁ ବାହାର,
ଧରି ମୋର ଭକ୍ତି ପୂଜା ଥାଳ ।
ବିତାଇଛି ବହୁବେଳ, ଭଲମନ୍ଦ ବିବାଦ ଭିତରେ
ଖାଲିଦିନ ବିତାଇଛି, ଖେଳସାଥିଗଣ ଗହଳରେ
ଏବେ କିମ୍ପା ସେମାନେ ଆନନ୍ଦେ,
ଟାଣିଛନ୍ତି ମୋ ମନକୁ, ପଦ ଅରବିନ୍ଦେ ।
ମୁଁ ବୁଝି ପାରୁନି, ଆକସ୍ମିକ ଏ ଡ଼ାକରା କିଆଁ ?
ଥିଲାଦିନେ ଏ ଜୀବନେ ଅସମ୍ପୃକ୍ତ ନିରର୍ଥକ ଯାହା ।।

●

# ୯୦

କେ ପଚାରେ ପ୍ରଶ୍ନ !
"ଯେଉଁଦିନ ମୃତ୍ୟୁ ଆସି
ଜଣାଇବ ଶେଷ ନିମନ୍ତ୍ରଣ
କେଉଁ ଉପହାର ଦେଇ
ତା'ମନକୁ କରିବ ତୋଷଣ ?
ଓ....ମୁଁ !
ମୁଁ କେବେ ଛାଡ଼ିବି ନାହିଁ
ଶୂନ୍ୟ ହାତେ ଅତିଥିଙ୍କୁ ମୋର,
ତାଙ୍କ ସମ୍ମୁଖରେ ଆଣି
ଥୋଇଦେବି ଶେଷ ଉପହାର ।
ଟେକି ଦେବି ହାତେ ତାଙ୍କ
ଜୀବନର ଉପାର୍ଜନ ସାରା
ଗ୍ରୀଷ୍ମରାତି ମାଦକତା
ଶାରଦୀୟ ଅମୃତ ମଦିରା ।
କର୍ମବ୍ୟସ୍ତ ଜୀବନର ଯା'କିଛି ସଞ୍ଚୟ -
ଅରପିବି ତାଙ୍କ ହାତେ
ଆସିଗଲେ ଅନ୍ତିମ ସମୟ ।
ପରିପୂର୍ଣ୍ଣ ମୋ ଜୀବନ ପାତ୍ର,
ଏହା ଜୀବନର ଶେଷ ଉପହାର ମାତ୍ର ।
ଶୂନ୍ୟ ହାତେ ଅତିଥିଙ୍କୁ ଛାଡ଼ିବିନି କେବେ
ପହଞ୍ଚିବ ମୋ ଦୁଆରେ...
ମୃତ୍ୟୁ ଆସି ଯେବେ ।।



# ୯୧

ହେ ମୃତ୍ୟୁ ମହାନ୍ !
ଏ ଜୀବନ ସମାପ୍ତିର ଶେଷ ଉଦ୍‌ଘୋଷଣ ।

ଆସ ଆସ କାନେ କାନେ କୁହ ଚୁପି ଚୁପି
"ମୁଁ ଆସିଲି, ମୁଁ ଆସିଲି ବାହାର ଏଣିକି" ।
ତୁମ ପ୍ରତୀକ୍ଷାରେ ଥିଲି, ଦିନଦିନ
ଚାହିଁ ରହି ସିନା,
ଭୋଗିଥିଲି ଜୀବନରେ ସୁଖଦୁଃଖ
ଅମାପ ଯନ୍ତ୍ରଣା ।

ଯାହାଥିଲା, ଯାହାଅଛି, ଯେତେ ଆଶା -
ପ୍ରେମମୟ ଧାରା,
ପରମ ଗୋପନେ ତାହା ବହୁଥିଲା
ତୁମ ପଥେ ପରା ।
ମିଳିବାକୁ ବାକିଥିଲା ତୁମ ନେତ୍ର ଗୋପନ ଇଙ୍ଗିତ
ଏ ଜୀବନ ହେବ ବୋଲି ତୁମ ପଦେ ଚିର ସମର୍ପିତ ।
ହୋଇବ ସମ୍ପୂର୍ଣ୍ଣ ତାହା, କେବଳ ତୁମର
ଆହେ ପ୍ରାଣେଶ୍ୱର !
ଫୁଲଗୁଚ୍ଛା ସରିଲାଣି,
ବରର ବରଣମାଳା ହେଲାଣି ପ୍ରସ୍ତୁତ,
ବିବାହ ଉତ୍ସବ ଶେଷେ, ବଧୂଯାତ୍ରା ହେବ ସମାହିତ,
ଘରଛାଡ଼ି ଯିବ ବହୁଦୂରେ,
ତା'ପ୍ରଭୁଙ୍କୁ ଭେଟିବ ସେ ନିର୍ଜନରେ
ଘନରାତ୍ରେ ବାସର ଗୃହରେ ।।



# ୯୨

ଜୀବନର ଅନ୍ତିମ ମୁହୂର୍ତ୍ତ
ହେଲେ ଉପଗତ,
ମୋ ନୟନେ ପୃଥିବୀର ଦୃଶ୍ୟହେବ ଫିକା,
ନୀରବେ ଜୀବନ ନେବ ଅନ୍ତିମ ବିଦାୟ
ଟାଣି ନେତ୍ରେ ଶେଷ ଯବନିକା ।

ତଥାପି ହସିବେ ତାରା ଆକାଶ ବୁକୁରେ
ପ୍ରଭାତ ଉଠିବ ହସି ଯଥା ସମୟରେ ।
ବହିବ ସମୟ ସ୍ରୋତ,
ଯତେ ଅବା ସମୁଦ୍ରର ବୀଚି,
ଜୀବନରେ ସୁଖ ଦୁଃଖ ରଚି ।।

ଅନ୍ତିମ ମୁହୂର୍ତ୍ତ କଥା -
ଯେତେବେଳେ ଆସେ ମୋ ମନକୁ
ସମୟର ପ୍ରତିବନ୍ଧ ଯାଏ ତୁଟି ମୋର,
ମୃତ୍ୟୁର ଆଲୋକେ ମୁହିଁ ଦେଖେ ବସୁଧାକୁ ।
ଲୋଭନୀୟ ତା' ଆସନ ଅଟଇ ବିରଳ
ଅନୁପମ ଅଟେ ତାର କ୍ଷୁଦ୍ରତମ ଜୀବନ ସମ୍ଭାର ।

ଯାହା ମୁଁ ପାଇବି ବୋଲି
ବ୍ୟାକୁଳରେ ଚାହିଁଥିଲି ଦିନେ,
ଯାହା ମୁଁ ପାଇଲି ଏଠି
ମୋର ଏଇ ସମଗ୍ର ଜୀବନେ ।
ଯାଉ ସବୁ ଚାଲି,
ଯେ ମହା ସମ୍ପଦ ମୁହିଁ
ବାରବାର ଦେଇଛି ଆଡ଼େଇ
ସେ ଧନର ହୁଏ ଅଧିକାରୀ ।।

●

# ୯୩

ହେ ମୋର ବନ୍ଧୁ ସକଳ ସଖା, ସାଥୀ !
ସଂସାର ଏ ଜଞ୍ଜାଳରୁ ମିଳିଲା ଏବେ ଛୁଟି ।
ହେ ଭାଇମାନେ ! ବିଦାୟ ଦିଅ ମୋତେ,
ସମ୍ମାନ ମୁଁ ଜଣାଏ ସର୍ବେ
ବିଦାୟ ପ୍ରଣିପାତେ ।

ଦେଉଛି ନିଅ ମୋର ଏ'ଚାବିମାଳ
ଅରପୁଅଛି ଘରର ସବୁଭାର ।
ମାଗୁନି କିଛି,
ଶେଷରେ ଖାଲି ଏତିକି ମୋର ଅଳି,
ତୁମର ସେଇ
କୋମଳ ମଧୁ ବଚନ ପଦେ-ଖାଲି ।

ଜାଣିଛି ପରା !
ଜୀବନ ସାରା ପଡ଼ୋଶୀ ଥିଲେ ଆମେ,
ମୋ ଦେବାଠାରୁ ପାଇଛି ବେଶି
ଦେଇଛ ସବୁତୁମେ ।
ପାହିଛି ରାତି ପ୍ରଭାତ ହେଲା ଏବେ,
ଅନ୍ଧାର ଘର ଦୀପଟି ମୋର ନିଭେ ।
ଅନ୍ତିମ ସେ ଡ଼ାକରା ଗଲା ମିଳି
ପ୍ରସ୍ତୁତ ମୁଁ
ବାହୁଡ଼ା ଯାତ୍ରା ବାଡ଼ିବି ଏବେ ବୋଲି ।।

●

# ୯୪

ଆଜି ଏ' ବିଦାୟ ବେଳେ
ଦିଅ ବନ୍ଧୁ ଶୁଭେଚ୍ଛା ତୁମର
ଉଷାଲୋକେ ହସଇ ଆକାଶ
ପଥ ମୋର ଆଲୋକ ବିମଳ ।
ପଚାରନି ....
"ମୋ ପାଖରେ କିସ ଅଛି
ଗଲାବେଳେ ନେବାକୁ ସେଠାକୁ,"
ଯାଉଛି ମୁଁ ଶୂନ୍ୟ ହାତେ, ନେଇସାଥେ
ଆଶାଭରା ମୋ ହୃଦୟଟିକୁ ।

ବିବାହ ମାଳିକା ଗୁନ୍ଥି
ଲମ୍ବାଇବି ଗଳାରେ ମୋ'ର
ପଥିକର ବେଶ ମୁହିଁ
ପିନ୍ଧିବିନି ଯା'ଧୂଳି ଧୂସର ।
ପଥ ମୋର ବିପଦେ ଭରିଛି,
ସେଥିପାଇଁ ମନେମୋର
ଭୟ ନାହିଁ କିଛି ।

ମୋ ଯାତ୍ରା ସରିବ ଯେବେ
ସନ୍ଧ୍ୟା ତାରା ହୋଇବ ଉଦିତ
ଗୋଧୂଳି ବିଷଣ୍ଣ ସ୍ୱର ହେବ ପ୍ରତିହତ ।
ପ୍ରଭୁଙ୍କ ସେ ଉଆସର ତୋରଣ ମଣ୍ଡପେ
ତହିଁ ଅବିଳମ୍ବେ ।।



# ୯୫

ପ୍ରଥମେ ଯେଦିନ ମୁହିଁ
ଅଜ୍ଞାତରେ ଡେ଼ଇଁଥିଲି ଜୀବନ ଦେହଳି,
ଜାଣି ପାରିଲିନି କିଛି,
ଚାହୁଁଥିଲି ହୋଇ କୁତୂହଳି ।
ଜାଣେନାହିଁ,
କେଉଁ ମହାଶକ୍ତି ମୋତେ କଲା ମୁକୁଳିତ -
ଏ ବିପୁଳ ରହସ୍ୟ ପୁରୀରେ,
ମୁଞ୍ଜରୀ ଉଠଇ ଯଥା ନବୀନ ମଞ୍ଜରୀ,
ଅର୍ଦ୍ଧରାତ୍ରେ ଶ୍ୟାମସ୍ନିଗ୍ଧ ଘନ ବନସ୍ତରେ ।

ନୟନ ପେଟିକା ଖୋଲି,
ଜୀବନର ପ୍ରଥମ ପ୍ରଭାତେ,
ଯେତେବେଳେ ଚାହିଁଲି ମୁଁ ଚଉପାଶେ
ନବୀନ ଆଲୋକେ ।
ସେଇ ମୁହୂର୍ତ୍ତରେ,
ଭାବିଲି ଅଜ୍ଞାତ ମୁହିଁ ନ ଅଟଇ
ପ୍ରିୟ ପୃଥିବୀରେ ।

କେଉଁ ଏକ ସମ୍ପୂର୍ଣ୍ଣ ରହସ୍ୟମୟୀ
ନାମହୀନ ସତ୍ତା,
କୋଳେ ମୋତେ ଟେକିନେଲା
ସିଏ ମୋର 'ମାତୃରୂପ'
ସ୍ନେହ-ମୟୀ ମାତା ।।

ସେଇପରି,
ମୃତ୍ୟୁର ମଧୁର ସ୍ପର୍ଶ ମିଳିଯିବ ଯେବେ,
ଅଜ୍ଞାତ ସତ୍ତାଟି ଆସି ଉଭାହେବ ତେବେ ।
ଅତିପ୍ରିୟ ପରିଚିତ ରୂପେ -
ବୁକେ ତା'ର ନେବ ସେ ଜଡ଼ାଇ,
ଆନନ୍ଦିତ ହୋଇ ।
ଜୀବନକୁ ପାଇଥିଲି ଭଲ
ମୃତ୍ୟୁ ମଧ୍ୟ ମୋ ପାଇଁ ସୁନ୍ଦର ।

ଜନନୀର ଦକ୍ଷିଣ ବୁକୁରୁ
ଶିଶୁଟିକୁ କରିଲେ ଅନ୍ତର,
କ୍ରନ୍ଦନର କୁହାଟ ସେ ତୋଳି
ଜଣା ଏ ତା' ପ୍ରତିବାଦ ସ୍ୱର ।
ମା' ତାକୁ ଦିଏ ଆଶ୍ୱାସନା
ବାମ ବୁକୁ ପରେ କରି ଶିଶୁକୁ ଥାପନା ।
ସେଇପରି 'ଜନ୍ମ' 'ମୃତ୍ୟୁ'
ମହିୟସୀ ଜନନୀର ବେନି ପୟୋଧର,
ଜୀବନ ପାଇଁ ଅଟଇ ଅମୃତ ଭଣ୍ଡାର ।
ସେତ ଅମୃତ ଭଣ୍ଡାର ।



## ୯୬

ବିଦାୟ୍ ଦିନେ ଏଇ କଥାଟି,
ଯେପରି ଯାଏ କହି,
"ଦେଖିଛି ଯାହା, ପାଇଛି ଯାହା
ତୁଳନା ତା'ର ନାହିଁ ।"

ଯେ ଜ୍ୟୋତି ଝରେ ସାଗର ତଳେ
ଯେ ଶତଦଳ ପଦ୍ମ ଖେଳେ,
ସେ ମଧୁ ମକରନ୍ଦ ମୁହିଁ -
କରିଛି ପରା ପାନ,
ଧନ୍ୟମଣେ ପରାଣ ମମ
ମୁଁ ଅଟେ, ଭାଗ୍ୟବାନ !
ବିଦାୟ୍ ଦିନେ ଏଇ କଥାଟି
ଯାଏ ମୁଁ ସଦା କହି
ଦେଖିଛି ଯାହା, ପାଇଛି ଯାହା
ତୁଳନା ତା'ର ନାହିଁ ।

ସଂସାରର ଏ ଖେଳଘରେ
କେତେ ଯେ ଖେଳଖେଳି
ଅରୂପାନନ୍ଦେ ଭେଟିଲି ଏଥି
ନୟନ ଯୁଗ ମେଲି ।

ପରଶ ଯାହା ଯାଏନା କରା
ସକଳ ଦେହେ ଦିଅନ୍ତି ଧରା,
ପବିତ୍ର ସେ ଅରୂପ ରୂପ
ପରଶି ଅଛି ମୁହିଁ ।
ଏତିକି ବେଳେ ଆସିଲେ ଆସୁ
ମୃତ୍ୟୁ ଯାଉ ଛୁଇଁ ।
ଦେଖିଛି ଯାହା, ପାଇଛି ଯାହା
ତୁଳନା ତା'ର ନାହିଁ ।
ତୁଳନା ତା'ର ନାହିଁ ।

ମୂଳ ଗୀତାଞ୍ଜଳି - ୧୪୨



## ୯୬

ଅପୂର୍ବ ସେ ଖେଳ
ତୁମରି ସାଥେ, ଖେଳରେ ମାତେ
ହୋଇ ମୁଁ ଯେବେ ଭୋଳ ।
ପଚାରି ନାହିଁ ପ୍ରଶ୍ନ କେବେ
ତୁମକୁ କିଏ ବୋଲି,
ଲଜ୍ଜା ଭୟ କିଛି ମୋ ନାହିଁ
ଖେଳେ ମୁଁ ସବୁ ଭୁଲି ।
ଅପୂର୍ବ ସେ ଖେଳ
ହୋଇ ମୁଁ ଖେଳେ ଭୋଳ ।

ସକାଳୁ ଆସି ଶେଯରୁ ମୋତେ
ଉଠାଅ ହାତ ଧରି,
ମୋର, ପରମ ବନ୍ଧୁ ପରି ।
କଢ଼ାଅ ବାଟ ଯିବାକୁ ଖେଳି
ମୁକ୍ତ ବନଭୂମେ,
ଘୂରାଅ ସଖା ! ଆନନ୍ଦରେ ତୁମେ ।

ମନକୁ ମୋର କରିବ ବୋଲି ଖୁସି
ଗାଇଛ କେତେ ଗୀତ ଯେ ହସିହସି ।
ଅର୍ଥ ତା'ର ପଚାରି ନାହିଁ ଥରେ
କଣ୍ଠକୁ ମୁଁ ମିଶାଇ ଅଛି -
ତା'ରି ସୁରେ ସୁରେ ।
ହୃଦୟ ମୋର ନାଚିଛି ଆନନ୍ଦରେ ।

ସେ ଖେଳ ବେଳ
ହୁଅଇ ଯେବେ ଶେଷ,
ନୟନେ ନାଚେ -
ଅଦ୍ଭୁତ ସେ ଦୃଶ୍ୟ ।
ଦେଖୁଛି ମୁହିଁ,
ତୁମରି ପଦେ ଆନତ ମୁଖେ
ନୀରବେ ସବୁ ତାରକା ସାଥେ
ଭକ୍ତି ଆଉ ଭୟରେ ଆସି
ପୃଥିବୀ ହୁଏ ଉଭା,
ପରମ ଶୋଭା ଆହାକି ମନଲୋଭା ।



# ୯୮

ପ୍ରଭୁ ! ଏ ଜୀବନେ ଭୋଗିଛି ମୁଁ
ଶତ ପରାଜୟ
ତାହା ମୋର ଏକାନ୍ତ ବିଜୟ ।
ହେ ସଖା ! ଗଳାରେ ତବ ଲମ୍ବାଇବି
ପରାଜୟ ମାଳ,
ଅଜେୟ ହୋଇ ଫେରିବା
ମୋ ଶକ୍ତି ବାହାର ।
ଯେତେ
ଅଳୀକ ମୋ ଅହଂକାର,
ଯନ୍ତ୍ରଣାରେ ଯିବ ତୁଟି ବନ୍ଧନର ଡ଼ୋର ।
ବିଳପିବ ମୋ ଶୂନ୍ୟ ହୃଦୟ,
ଛିନ୍ନବୀଣା ତାରେ ତୋଳି -
ବେସୁରା ସେ ସଙ୍ଗୀତରଲୟ ।
ଦେବ ତରଳାଇ,
ପାଷାଣକୁ କରି ଦେବ -
ଏକ ଅଶ୍ରୁ ନଇ ।

ମୁଁ ଜାଣିଛି,
ସହସ୍ର ଦଳ କମଳ ଫୁଟିବ ନିଶ୍ଚୟ,
ରହିବନି, ଚିରଦିନ ସେ ରହସ୍ୟମୟ ।
ନିର୍ଝରିବ ଗୋପନେ ତା'ମଧୁ
ମୁକ୍ତ ହୋଇ ବନ୍ଧନ ପରିଧି ।

ଦେଖୁଛ କି ନାହିଁ ସଖା !
"ନୀଳ ଆକାଶରୁ ମୋତେ,
କରୁଅଛି ନିରୀକ୍ଷଣ କିଏ
ନିରବେ ଜଣାଏ ଶେଷ -
ନିମନ୍ତ୍ରଣ ସିଏ....।
ମୋ ପାଇଁ ନାହିଁ ତ ଗତି
ଲେଶମାତ୍ର ନାହିଁ କିଛି ଆଉ,
ତବ ଶ୍ରୀଚରଣ ତଳେ
ମୃତ୍ୟୁଲଭି, ଏ ଜୀବନ ଯାଉ ।

ଜୀବନେ ଲଭିଛି ସଖା ଶତ ପରାଜୟ
ଏହା ମୋର ଏକାନ୍ତ ବିଜୟ ।।



## ୯୯

ନୌକା ମୋର ହେଲାଣି ଟଳମଳ
ସମୟ ଏବେ ଆସିଛି ପ୍ରଭୁ !
ଏଥର ତୁମେ ମଙ୍ଗଟିକୁ ଧର ।
ସଂଗ୍ରାମ ମୁଁ କରିବି ବୃଥା କିଆଁ ?
ଅବିଳମ୍ବେ କରିବା ଯାହା
କରିବି ଏବେ ତାହା ।

ହୃଦୟ ! ତୁମେ ନୀରବେ ନିଅ -
ଆଦରି ପରାଜୟ,
ଭକ୍ତିଭରେ ତାଙ୍କଠି ରଖି ଲୟ ।

ମନରେ ଭାବ,
ସୌଭାଗ୍ୟର ମୁହୂର୍ତ୍ତ ଅଛି ଆସି,
ଯେଉଁଠେ ତୁମେ ବସିଛ ଏବେ
ନୀରବେ ଥାଅ ବସି ।

ଜାଳିଛି ମୁହିଁ ପ୍ରଦୀପ ଯେତେଥର
ଟିକିଏ ଖାଲି ପବନ ହେଲେ, ନିଭେ ତା'ବାରବାର ।
ଥରକୁ ଥର ଚେଷ୍ଟାକରେ ଭୁଲି,
ଦୀପକୁ ମୋର ଜଳାଇ ଦେବି ବୋଲି ।

ଏଥର କିନ୍ତୁ ଜାଳିବି ନାହିଁ ବାରେ
ଅପେକ୍ଷାରେ ବସିବି ଅନ୍ଧକାରେ ।
ତଳେ ମୁଁ ଦେବି ଆସନ ମୋର ପାରି
ଖୁସିରେ ପ୍ରଭୁ ନୀରବେ ଆସି -
ବସିବେ ଏଥି ବୋଲି ।



## ୧୦୦

ଅରୂପ ସେ ମୁକ୍ତାଟିକୁ ପାଇବି ମୁଁ ବୋଲି
ରୂପର ସମୁଦ୍ରେ ବୁଡ଼େ ହୋଇ କୁତୂହଳି ।
ଜୀବନର ଜୀର୍ଣ୍ଣତରୀ ଭାସୁଛି ସାଗରେ,
ପାରିବନି ବୁରି ଆଉ ଘାଟରେ ଘାଟରେ ।
ଦିନଥିଲା -
ତରଙ୍ଗର ତାଳେତାଳେ ନାଚୁଥିଲି ତରୀ ବାହିବାହି
ସେ ଦୂର ଅତୀତ ଦିନ, ଆଜି ଆଉ ନାହିଁ ।
ମନ ମୋର ହେଲାଣି ବିକଳ
ଲଭିବାକୁ ମୃତ୍ୟୁହୀନ ସେ ଅମୃତ ପୁର ।

ଅତଳ ସେ'ସଭା ମଝେ ସିନା,
ଉଛୁଳେ ସଙ୍ଗୀତ ନିତ୍ୟ ନଯାଏ ଯା' ଶୁଣା ।
ମୋ ଜୀବନ ବୀଣାଟିକୁ ନେବି ମୁଁ ସେଠାକୁ
ସେ ସଙ୍ଗୀତ ସ୍ୱର ସାଥେ ମିଶାଇବି
କରୁଣ ସ୍ୱରକୁ ।
ନିରବିବ ତାହା ଯେତେବେଳେ,
ଥାପି ଦେବି ମୋ ବୀଣାଟି,
ସେ ନୀରବ ପୁରୁଷଙ୍କ ପୁଣ୍ୟ ପଦତଳେ ।

ମୂଳ ଗୀତାଞ୍ଜଳି - ୪୬



# ୧୦୧

ତୁମକୁ ପ୍ରଭୁ ! ଖୋଜୁଛି
ମୋର ସଙ୍ଗୀତର ସ୍ୱରେ,
ଜୀବନ ସାରା, ବାହାରେ ବା ଅନ୍ତରେ ।

ଯାଇଛି ଦୂରେ ମୁଁ ଘରେଘରେ
ସେ ଗୀତ ସାଥେ ମୁହିଁ,
ଖୋଜିଛି କେତେ ଚୁଇଁଛି ବିଶ୍ୱ -
ଜୀବନ ଧାରା ତହିଁ ।
ଅନ୍ତର ମୋ' କରିଛି ଅନୁଭବ,
ବ୍ୟାପ୍ତ ଏଇ ବଶ୍ୱ ବୁକେ ତବ ।

ଜୀବନ ସାରା ଶିଖିଛି ଯାହା
ଶିଖାଇ ଅଛି ସଙ୍ଗୀତ ମୋ ସାଥୀ ।
ଦେଖାଇ ଅଛି ଗୋପନ ପଥ
ଚିହ୍ନାଇ ଅଛି ହୃଦୟାକାଶେ -
କେତେ ଯେ ତାରା ବୀଥି ।

ବିଚିତ୍ର ଏ ଦୁଃଖ, ସୁଖ ପଥେ,
ରହସ୍ୟାଲୋକେ ଘୂରାଏ କେତେମତେ ।
ଜୀବନର ଯେ ଯାତ୍ରା ଶେଷେ
ସନ୍ଧ୍ୟାଲୋକେ
ନିଅନ୍ତି କେଉଁ ପୁରେ,
ହଜାଇ ସେଇ ସଙ୍ଗୀତର ସ୍ୱରେ ।
ପ୍ରଭୁ ! ତୁମକୁ ଖୋଜେ ବାହାରେ ମୁଁ ଅନ୍ତରେ ।

ମୂଳ ଗୀତାଞ୍ଜଳି - ୧୩୨



## ୧୦୨

ତୁମକୁ ଜାଣିଛି ବୋଲି,
ଅହେତୁକ ଅହଂକାର କରେ ମୁଁ ପ୍ରକାଶ,
ସେମାନେ ମୋ ଚିନ୍ତନରେ -
ପାଇଥାନ୍ତି ତୁମରି ଆଭାସ ।
ସେମାନେ ଆସନ୍ତି ପାଶେ
ପଚାରନ୍ତି ମୋତେ,
"କାହିଁ ସେ ଅଛନ୍ତି କୁହ
କିଏ ହେ ଈଶ୍ୱର ?"
ନଥାଏ ମୋ ପାଖେ କିନ୍ତୁ -
ଏ ପ୍ରଶ୍ନର ସଠିକ ଉତ୍ତର ।

କହେ ତାଙ୍କୁ ଧୀରେ,
"କହି ମୁଁ ପାରିବି ନାହିଁ ତାଙ୍କ ବିଷୟରେ ।"
ସେମାନେ ଯାଆନ୍ତି ଫେରି -
ନୟନରେ ଅବଜ୍ଞା ଚାହାଣୀ,
ତୁମେ ପ୍ରଭୁ ! ବସି ତହିଁ ହସୁଥାଅ ପୁଣି ।

କହି ସିନାପାରେ ନାହିଁ ତୁମ ବିଷୟରେ
ତୁମ ଲୀଳା ବ୍ୟକ୍ତକରେ
ପ୍ରାଣମୟ ପ୍ରିୟ ସଙ୍ଗୀତରେ ।
ଅନ୍ତରର ଯା'କିଛି ଗୋପନ
ହୁଏ ପ୍ରସ୍ଫୁଟନ ।

ସେମାନେ ଆସନ୍ତି ପୁଣି ପଚାରନ୍ତି,
"କବି ! ନକରି ଗୋପନ,
ବୁଝାଅ ଆମକୁ ତୁମ ସଙ୍ଗୀତର
ନିଭୃତ କଥନ
ଯାହା ଚିରନ୍ତନ ।"

ବୁଝିପାରେ ନାହିଁ ମୁହିଁ, କି ଉତ୍ତର
ଦେବି ତାଙ୍କୁ, ସିଏ ହେବେ ଖୁସି,
ତଥାପି ମୁଁ କହେ ହସିହସି,
"କିଏ ବା ଜାଣିଛି କହ
କି ନିଗୂଢ଼ ଅର୍ଥ ତହିଁ ରହିଅଛି ଲୁଚି !"
ବିଦ୍ରୂପର ହସତୋଳି,
ଅବଜ୍ଞାରେ ଯାଆନ୍ତି ସେ ଚାଲି
ତୁମେ କିନ୍ତୁ ବସି ତହିଁ ହସୁଥାଅ ଖାଲି ।
ପ୍ରଭୁ ! ହସୁଥାଅ ଖାଲି ।।

●

# ୧୦୩

ସେଇ, ଗୋଟିଏ ନମସ୍କାରେ ହେ ପ୍ରଭୁ !
ଗୋଟିଏ ନମସ୍କାରେ,
ଶରୀର ସାରା ଯାଉମୋ'ଲୋଟି
ବିରାଟ ବିଶ୍ୱପରେ,
ପ୍ରଭୁ ! ତମରି ଚରଣରେ ।
ଗୋଟିଏ ନମସ୍କାରେ ।

ଶ୍ରାବଣ ଘନ ବାରିଦ ଯଥା
ଉତୁରି ଉଠେନଭେ,
ଅସରା ମେଘ-ପସରା ଭାରେ
ଆତୁର ବର୍ଷା ରାଗେ ।
ତମରି ପୁରେ ସେପରି ପ୍ରଭୁ !
ନମିତ ହେଉ,
ଶରୀର, ମନ, ହୃଦୟ ସବୁ -
ସେଇ ମୋ ନମସ୍କାରେ,
ପ୍ରଭୁ ! ସେଇ ମୋ ନମସ୍କାରେ ।

ଛିନ୍ନ ମୋର ଗୀତରଧାର
ଗୋଟିଏ ସ୍ରୋତେ, ହୁଅନ୍ତୁ ଏକାକାର,
ଗୋଟିଏ ନମସ୍କାରେ ପ୍ରଭୁ ! ଗୋଟିଏ ନମସ୍କାରେ
ସମସ୍ତମାନ ନିରବି ଯାଉ
ନିରବ ପାରାବାରେ ।
ସେଇ ମୋ ନମସ୍କାରେ
ପ୍ରଭୁ ! ସେଇ ମୋ ନମସ୍କାରେ ।

ଦିବସ ରାତି

ବଳାକା ରେଖା, ଗଗନେ ଲେଖା
ବାହୁଡ଼ି ଥାନ୍ତି ବିକଳ ହୋଇ ନୀଡ଼େ,
ମାନସ ହଂସ ଫେରନ୍ତି ଯଥା
ମାନସ ସରୋବରେ ।
ସେପରି ପ୍ରଭୁ ! ଜୀବନ ମମ
ଲକ୍ଷ୍ୟ ମୋର ନିତ୍ୟ ଧାମ -
ଚିନ୍ମୟ ସେ ପୁରେ ।
ତୋଳୁ ତା' ଯାତ୍ରା ଧୀରେ..
ସେଇ, ମହା ମରଣର ପାରେ ।
ପ୍ରଭୁ ! ସେଇ ମହାମରଣର ପାରେ ।

ସମାପ୍ତ

## ୧

ମଥା ମୋର ପ୍ରଭୁ ! ନତ କରିଦିଅ
ତମରି ଚରଣ ଧୂଳିରତଳେ,
ସକଳ ଅହଂକାର ହେ ! ମୋର
ପୋଛି ଦିଅ ମମ ଅଶ୍ରୁଜଳେ ।
ନିଜକୁ କରି ମୁଁ ଗୌରବ ଦାନ
କେବଳ କରୁଛି ଆତ୍ମ ଅପମାନ,
ଆପଣାକୁ ଖାଲି ଘେରି ଘେରି ମୁହିଁ
ଘୂରିମରେ ପଳେ ପଳେ
ସକଳ ଅହଂକାର ହେ ! ମୋର
ପୋଛିଦିଅ ମମ ଅଶ୍ରୁ ଜଳେ ।।

ନିଜର କାମକୁ ପ୍ରଚାର ଯେପରି
ନିଜେ ମୁଁ ନକରେ ପ୍ରଭୁ !
ତମରି ଇଛା ପୂରଣ କର ହେ,
ଏ ଜୀବନେ ଯାହା ସବୁ ।
ଏତିକି ଯାଚନା, ପରମଶାନ୍ତି
ପରାଣେ ମୋ'ଭର, ବିମଳ କାନ୍ତି,
ଛିଡ଼ା ହୁଅ ମୋତେ ଆଡୁଆଳ କରି
ହୃଦୟ ପଦ୍ମଦଳେ,
ସକଳ ଅହଂକାର ହେ ! ମୋର
ପୋଛିଦିଅ ମମ ଅଶ୍ରୁଜଳେ ।।



---

ଗୀତାଞ୍ଜଳିର '୨' କବିତାଟି ପ୍ରଥମ ପଲ୍ଲବର '୧୪' କବିତା
'୩' କବିତାଟି ପ୍ରଥମ ପଲ୍ଲବର '୬୩' କବିତା

# ୪

ବିପଦରୁ ମୋତେ ରକ୍ଷାକର ବୋଲି
ଏ ନୁହେଁ ପ୍ରାର୍ଥନା ମମ,
ବିପଦକୁ ମୁହିଁ ନକରେ ଯେପରି ଭୟ ।
ଦୁଃଖ ତାପ ଦଗ୍ଧ ବ୍ୟଥିତ ଚିତ୍ତକୁ
ନଦେଲେ ସାନ୍ତ୍ୱନା ଅବା,
ଶକତି ଦିଅ ହେ ! ଦୁଃଖକୁ କରେ ଜୟ ।

ସହାୟକ କେହି ଜୁଟୁବା ନଜୁଟୁ
ମନୋବଳ ମୋର ଯେପରି ନତୁଟୁ,
ସଂସାରେ ଯାହା କ୍ଷତି ଘଟୁ ପଛେ -
ବଞ୍ଚନା ମିଳୁ ଯାହା,
ମନ ରହୁ ସଦା ଥୟ
ନ ଘେନୁ ମୋ'ମନ, ଯେତେ ଯାହା କ୍ଷତି, କ୍ଷୟ ।

ପ୍ରଭୁ, ତୁମେ ମୋତେ, କର ପରିତ୍ରାଣ
ଏ ନୁହେଁ ଯାଚନା ମୋର,
ତରିବା ଶକତି ଯେପରି ରହିବ ମମ ।
ମୋ ଭାରା ଲାଘବ ପାଇଁ ପ୍ରଭୁ ! ମୋତେ
ନମିଳୁ ସାନ୍ତ୍ୱନା ଅବା,
ସେ ଭାରା ବହନ କରିବାକୁ ହୁଏ କ୍ଷମ ।
ନମ୍ର ଶିରେ ମୁଁ ସୁଖଦିନେ ପ୍ରଭୁ !
ତମ ମୁଖେ ରହୁ ଲୟ,
ଦୁଃଖ ରାତିରେ ନିଖିଳ ବିଶ୍ୱ ବଞ୍ଚନା କଲେ ଅବା
ଯେପରି ନରହେ ମନେ ମୋର ସଂଶୟ ।।

●



ଅନ୍ତର ମମ ବିକଶିତ କର
ଅନ୍ତରତମ ହେ !
ନିର୍ମଳ କର ଉଜ୍ଜ୍ୱଳ କର
ସୁନ୍ଦର କର ହେ !
ଜାଗ୍ରତ କର ଉଦ୍ୟତ କର
ନିର୍ଭୟ କର ହେ !
ଅନ୍ତର ମମ ବିକଶିତ କର
ଅନ୍ତର ତମ ହେ !

ନିଖିଳ ଜୀବନେ ଯୁକ୍ତ କରହେ
ମୁକ୍ତ କରହେ ବନ୍ଧ,
ସକଳ କରମେ ସଞ୍ଚାର କର
ଶାନ୍ତ ତୁମର ଛନ୍ଦ ।
ଚରଣ ପଦ୍ମେ ଚିତ୍ତକୁ ମମ ସ୍ପନ୍ଦିତ କରହେ,
ନନ୍ଦିତ କର ନନ୍ଦିତ କର
ନନ୍ଦିତ କର ହେ ।
ଅନ୍ତର ମମ ବିକଶିତ କର
ଅନ୍ତର ତମ ହେ ।



୬

ପ୍ରେମେ ପ୍ରାଣେ ଗାନେ ଗନ୍ଧେ, ଆଲୋକେ ପୁଲକେ
ପ୍ଲାବିତ କରିଛ, ନିଖିଳ ଦ୍ୟୁଲୋକେ ଭୂଲୋକେ ।
ତୁମର ଅମର ଅମୃତ ଧାରା ଝରଇ,
ଅମୃତ ରସ ଜୀବନରେ ମମ ଭରଇ ।
ଦିଗେ ଦିଗେ ବାଧା ବନ୍ଧନ ସବୁ ତୁଟିଛି
ଆନନ୍ଦ ଆଜି ନବୀନ ମୂରତି ଧରିଛି ।
ମଧୁର ସେ ମକରନ୍ଦ ଜୀବନେ ଭରଇ
ଜୀବନ ପାତ୍ର ପୂରଇ ।

ଚେତନା ମୋ'ର, କଲ୍ୟାଣ ରସ ସରସେ -
ଶତଦଳ ସମ ଫୁଟିଛି ପରମ ହରଷେ,
ସେ ଅମିୟ ସୁଧା ଅରପେ ତୁମରି ଚରଣେ
ପ୍ରଭୁ ! ତୁମ ଅନୁସରଣେ ।

ଉଦାର ଉଷାର ଉଦୟ ଅରୁଣ ରାଗରେ
ନିରବ ଆଲୋକ ଜାଗିଲା ହୃଦୟ ଭାଗରେ,
ଅଳସ ଆଖିର ଆବରଣ ଗୋଟି ତୁଟିଲା
ଆନନ୍ଦ ପ୍ରାଣେ ଛୁଟିଲା ।।



## ୬

ତୁମେ ନବ ନବ ରୂପେ ଆସ ପ୍ରାଣେ
ଆସ ହୋଇ ଗନ୍ଧ, ବର୍ଣ୍ଣ ରୂପେ ଗାନେ,
ଅଙ୍ଗକୁ ମମ ଆସ, ପୁଲକିତ ପରଶେ ।
ମୁଗ୍ଧ ମୁଦିତ ମୋ ନୟନେ ଆସ
ତୁମେ ନବରୂପେ ପ୍ରାଣେ ପରକାଶ,
ଚିତ୍ତକୁ ଆସ ଅମୃତମୟ ହରଷେ ।

ଆସ ନିର୍ମଳ ଉଜ୍ଜ୍ୱଳ କାନ୍ତ
ଆସ ସୁନ୍ଦର ସ୍ନିଗ୍ଧ ପ୍ରଶାନ୍ତ
ଆସ ଆସ ପ୍ରଭୁ ! ଆହେ ବିଚିତ୍ର ବିଧାନେ
ସୁନ୍ଦର ଏଇ ଜୀବନେ ।

ଆସ ସୁଖେ ଦୁଃଖେ ଆସ ହେ ମରମେ
ଆସ ନିତି ପ୍ରତି ସମସ୍ତ କରମେ,
ଆସ ହେ ସକଳ କର୍ମ ଅବସାନେ
ତୁମେ ନବନବ, ରୂପେ ଆସ ପ୍ରାଣେ
ଆସ ପୁଲକିତ ପରଶେ,
ଅମୃତମୟ ହରଷେ ।।



## ୮

ଆଜି ଧାନ କ୍ଷେତେ ଖରା ଛାଇ ଭରା
ଚାଲେ ଲୁଚକାଳି ଖେଳା
ନୀଳ ଆକାଶେ କେ ଭସାଇଛି ଆଜି
ଶୁଭ୍ର ବାଦଲ ଭେଳା ।
ମଧୁ ପାନ ଭୁଲି ମଧୁପିଆ ଆଜି
ଭ୍ରମୁଅଛି ଆଲୋକରେ
ଚକୁଆ ଚକୋଇ ମେଳା କାହିଁ ପାଇଁ
ଆଜି ନଦୀ ତୀରେ ତୀରେ ।

ଫେରିବିନି ଆଜି ଘରକୁ ମୁଁ ଭାଇ !
ଫେରିବିନି ଆଜି ଘର
ଆକାଶ ମନ୍ଥି ଆଣିବି ଜଗତେ
ଲୁଟି ନେବି ତାର ପୁର ।
ଜୁଆରେ ଯେପରି ଭାସେ ଫେନ ରାଶି
ପବନେ ଯେପରି ହସ ଉଠେ ଭାସି,
ଆଜି ବିନା କାମେ କଟାଇବି ଦିନ
ତୋଳି ବଂଶୀର ତାନ,
ଆକାଶ ବୁକୁରେ
ଭସା ବାଦଲର ଗାନ ।
ଭସା ବାଦଲର ଗାନ ।।



# ୯

ଆନନ୍ଦର ସାଗରେ ଉଠେ
ବନ୍ୟା ଆଜି ପୁଣ
ମଙ୍ଗଧରି ବସରେ ସବୁ
ଟାଣରେ ସବୁଟାଣ ।
ବୋଝାଅ ଯେତେ
ବୋଝାଇ କରି
କରିବ ପାରି ଦୁଃଖ ତରୀ,
ଢେଉର ଧାରେ ଧାଇଁବା ଆରେ !
ଗଲେବା ଯାଉ ପ୍ରାଣ
ଆନନ୍ଦର ସାଗରେ ଉଠେ
ବନ୍ୟା ଆଜି ପୁଣ ।

ଡ଼ାକୁଛି କିଏ ପଛରୁ ଠାରି
କରୁଛି କିଏ ମନା,
ଭୟର କଥା କେ କହେ ଆଜି
ଆମକୁ ସବୁ ଜଣା ।
କାହାର ଶାପେ..କି ଗ୍ରହ ଦୋଷେ
ସୁଖ ଢ଼ଙ୍ଗାରେ, ଥିବାରେ ଖାଲି ବସି ।
ପାଲର ରଶି, ଧରିବା କଷି
ଚାଲିବା ଗାଇ ଗାନ,
ଆନନ୍ଦର ସାଗରେ ଉଠେ
ବନ୍ୟା ଆଜି ପୁଣ ।



---

ଗୀତାଞ୍ଜଳିର '୧୦' କବିତାଟି ପ୍ରଥମ ପଲ୍ଲବର '୮୩' କବିତା

# ୧୧

କାଶତଣ୍ଡି ଫୁଲପେନ୍ଥା ବାନ୍ଧିଛୁ
ଗୁନ୍ଥି ଶେଫାଳି ମାଳା,
ନବୀନ ଧାନର ମଞ୍ଜରୀ ଚହିଁ
ସଜାଇ ଆଣିଛୁ ଡ଼ାଲା ।
ଆସ ଗୋ ଶାରଦ ଲକ୍ଷ୍ମୀ ! ତୁମର
ଶୁଭ୍ର ବାଦଲ ରଥେ,
ଶ୍ୟାମଳ ଆଲୋକ ଝରାଇ ଆସ ଗୋ
ବନ ଗିରି ପର୍ବତେ ।
ଶିଶିର ଧୌତ ଶ୍ୱେତ ଶତଦଳ
ମୁକୁଟେ, ମୁକୁଟ ମଣ୍ଡି ।
ଆସ ଆସ ଆଗୋ ଶରଦ ଲକ୍ଷ୍ମୀଅର୍ଘ୍ୟ ।

ଭରା ଗଙ୍ଗାକୂଳେ ନିଭୃତ କୁଞ୍ଜେ
ଝରା ମାଳତିର ଫୁଲେ,
ଆସନ ଦେଇଛୁ ବିଛାଇ ଆସ ଗୋ !
ପବିତ୍ର ସେଇ ପୁରେ ।
ଆସନ୍ତି ମରାଳ ଦଳ,
ଡ଼େଣା ପାତିବାକୁ ତମରି ଚରଣ ତଳ ।

ଗୁଞ୍ଜରଣ ଗୋ ତୋଳିଦିଅ ତମ
ସ୍ୱର୍ଣ୍ଣ ବୀଣାର ତାରେ,
ମୃଦୁ ମୃଦୁ ଝଙ୍କାରେ,
ହସ ଢ଼ଳା ସ୍ୱର ଝରି ପଡ଼ିବ ଗୋ
କ୍ଷଣିକ ଅଶ୍ରୁଧାରେ ।

ରହି ରହି ରହି ଚୂର୍ଣ୍ଣ କୁନ୍ତଳେ
ଝଲସେ ପରଶ ମଣି,
ନୟନ ପଲକେ ସକରୁଣ ହାତ
ବୁଲାଇ ଆଣିଲେ ପୁଣି,
ସୁନା ହୋଇଯିବ ସକଳ ଭାବନା ମୋର
ଆଲୋକି ଉଠିବ ମମ ଅନ୍ଧାର ପୁର ।।



## ୧୨

ଅମଳ ଧବଳ ପାଲରେ ବାଜୁଛି
ମନ୍ଦ ମଧୁର ହାଓଆ
ଦେଖି ନାହିଁ କେବେ ଦେଖି ନାହିଁ ମୁହିଁ
ଏପରି ତରଣୀ ବାହିବା ।
କେଉଁ ସାଗରସେ ପାର୍ ହୋଇ ଆଣେ -
କେଉଁ ସୁଦୂରର ଧନ ।
ତହିଁ, ଭାସି ଯିବ ଚାହେଁ ମନ,
ତୁଚ୍ଛ କରି ସବୁ, ଯା'କିଛି ଚାହିଁବା ପାଇବାର
ଅଭିମାନ ।
ପଛରେ ଝରୁଛି ଝରଝର ଜଳ
ଗୁରୁ ଗରଜନ ଡ଼ାକେ,
ମୁଖେ ଆସି ପଡ଼େ ଅରୁଣ କିରଣ
ଛିନ୍ନ ମେଘର ଫାଙ୍କେ ।
ଆହେ କାଣ୍ଡାରୀ, କିଏ ଅଟ ତୁମେ
କା'ହସ କାନ୍ଦ ଧନ
କେଉଁ ସୁରେ ଆଜି ବାନ୍ଧିବ ଯନ୍ତ୍ର
କି ମନ୍ତ୍ର କରି ଗାନ ?
ଭାବି, ପାରୁନି ମୋ ମନ ।।



# ୧୩

ମୋ' ନୟନ ଭୁଲାଇ ଆସିଲ ତୁମେ
କି ରୂପ ଦେଖିଲି ହୃଦୟ ଖୋଲି,
ପରାଣ ଭରି ।
ଶିଉଳି ଲତାର ପାଶେ ପାଶେ
ଝରା କୁସୁମର ରାଶେ ରାଶେ
ଶିଶିର ଧଉତ ଘାସେ ଘାସେ
ଅରୁଣ ରଙ୍ଗୀ ଚରଣ ଚାଳି ଗୋ ଆସିଲ -
ନୟନଭୁଲା ବେଶେ ।
ଶିଶିର ଧଉତ ଘାସେ ଘାସେ ।

ଛାଇ ଆଲୁଅର ପଣତ ଲୋଟଇ
ବନେ...ବନେ,
ସେ ମୁଖକୁ ଚାହିଁ ଫୁଲମାନେ,
କି କଥା କହନ୍ତି ମନେ ମନେ ।
ତମକୁ ବରଣ କରିବୁ ଆମେ ଗୋ !
ଫେଡ଼ି ଦିଅ ମୁଖ ଆବରଣ -
ମେଘର ଓଢ଼ଣା, ଦିଅ ଖୋଲି ।
ହାତ ଚାଳି ।
ସେ ନୟନ ଲୋଭା ରୂପ ତୋଳି ।
ରୂପ ତୋଳି ।

ବନ ଦେବୀଙ୍କର ଦୁଆରେ ଶୁଭଇ
ଶଙ୍ଖଧ୍ୱନି,
ଆକାଶବୀଣାର ତାରେ ତାରେ ଜାଗେ
ଆଗମନୀ, ତମ ଆଗମନୀ ।

ସ୍ୱର୍ଣ୍ଣ ନୂପୁର ବାଜେ କାହିଁ,
ଲାଗଇ ହୃଦୟତଳ ଛୁଇଁ ।
ସକଳ ଭାବରେ ସକଳ କରମେ
ପାଷାଣ ତରଳା ସୁଧା ଢ଼ାଳି -
ଆସିଲ ଗୋ ତୁମେ !
ମୋ !ନୟନ ଭୁଲା ରୂପଧରି ।
କି ରୂପ ଦେଖିଲି ହୃଦ ଖୋଲି ।
ହୃଦ ଖୋଲି ।।



## ୧୪

ଜନନୀ ତୁମର କରୁଣ ଚରଣ ଯୁଗ
ଦେଖୁଅଛି ଆଜି ଅରୁଣ କିରଣ ରୂପେ
ତୁମର ଗୋ ସେଇ ମରଣ ହରଣ ବାଣୀ
ନିରବେ ଗଗନେ ଭରିଉଠେ ଚୁପେ ଚୁପେ ।
ସକଳ ଭୁବନ ସହିତ ଜନନୀ ତୁମକୁ ପ୍ରଣାମ କରେ
ସକଳ ଜୀବନ, କରମ, ଧରମ ଭିତରେ ପ୍ରଣତି ଭରେ ।
ଭକତି ପବିତ୍ର ତମ ପୂଜା ଧୂପେ
କରେ ନିବେଦନ ଆଜି
ତନୁ, ମନ, ଧନ, ଏ ପରାଣ ମମ
ବିଶ୍ୱ ବିଭବ ରାଜି ।
ସମରପେ..ସମରପେ
ଜନନୀ ତୁମର କରୁଣ ଚରଣ ଯୁଗ
ଦେଖୁଅଛି ଆଜି ଅରୁଣ କିରଣ ରୂପେ ।
ଅରୁଣ କିରଣ ରୂପେ ।।



# ୧୫

ଜଗତ ସାରା ଉଦାର ସ୍ୱରେ
ଆନନ୍ଦ ଗୀତ ଝରେ,
ସେ ଗୀତ କେବେ ଗଭୀର ରବେ
ବାଜିବ ମୋର,
ହୃଦୟ ବୀଣା ତାରେ ?
ଆକାଶ ପାଣି ପବନ ଜ୍ୟୋତି
ସବୁକୁ ଭଲ ପାଏ ମୁଁ ନିତି,
ବସିବେ ସବୁ ଶୋଭିତ କରି
ହୃଦୟ ସଭା ପୁରେ ।

ନୟନ ବେନି ଖୋଲିଲେ କେବେ
ପରାଣ ହେବ ଖୁସି
ଯେ ପଥେ ନିତି ଚାଲିବି ମୁହିଁ,
ସରବେ ଯିବି ତୋଷି ।
'ନିଖିଳ ବୁକେ' ବିରାଜ ତୁମେ
ବୁଝିବି କେବେ ସହଜ ମନେ
ତୁମରି ନାମ ରଟିବି କେବେ,
ଜୀବନ ସୁରେ ସୁରେ ।
ଆନନ୍ଦ ଗୀତ ଝରେ ।



---

ମୂଳ ଗୀତାଞ୍ଜଳିର '୧୬' କବିତାଟି ପ୍ରଥମ ପଲ୍ଲବର '୧୮' କବିତା
ମୂଳଗୀତାଞ୍ଜଳିର '୧୭' କବିତାଟି ପ୍ରଥମ ପଲ୍ଲବର '୨୬' କବିତା
ମୂଳଗୀତାଞ୍ଜଳିର '୧୮' କବିତାଟି ପ୍ରଥମ ପଲ୍ଲବର '୨୨' କବିତା

## ୧୯

ଆଷାଢ଼ ସନ୍ଧ୍ୟା ଘନେଇ ଆସେ
ଯାଏରେ ଦିନ ବହି
ଅବାଧ ସେଇ ବୃଷ୍ଟି ଧାରା
ଝରଇ ରହି ରହି ।
ଏକଲା ବସି ଏ ଘର କୋଣେ
ଭାବୁଛି କିସ ମୁଁ ମନେ ମନେ,
ସଜଳ ବାଆ ଯୂଥୀକାବନେ
କି କଥା ଯାଏ କହି ?
ବନ୍ଧନ ହରା ବୃଷ୍ଟିଧାରା
ଝରୁଛି ରହି ରହି ।
ହୃଦୟ୍ ଆଜି ଉଦ୍‌ବେଳିତ
ପାଉନି ଖୋଜି କୂଳ
ସୁରଭି ଝରା ପରାଣ କାନ୍ଦେ
ଭିଜାଇ ବନଫୁଲ ।
ଅନ୍ଧାର ରାତି ପ୍ରହର ସବୁ
କି ସୁରେ ଦେବି ଭରି,
କି ଦୋଷ ପାଇଁ ସକଳ ଭୁଲି
ବ୍ୟାକୁଳେ ହୁଏ ଘାରି ।
ଅବାଧ ସେଇ ବୃଷ୍ଟିଧାରା
ପଡ଼ଇ ଝରିଝରି ।



ମୂଳଗୀତାଞ୍ଜଳିର '୨୦' କବିତାଟି ପ୍ରଥମ ପଲ୍ଲବର '୨୩' କବିତା

## ୨୧

ଜାଣିଅଛି କେଉଁ ଅନାଦି କାଳରୁ ମୋର
ଭସାଅ ଜୀବନ ଅନନ୍ତ ଜୀବନ ସ୍ରୋତେ ,
କେତେ ଆନନ୍ଦ ଭରିଛ ଜୀବନେ ମମ
ସହସା ହେ ପ୍ରିୟ କେତେ ଗୃହେ କେତେ ପଥେ ।

କେତେବାର ତୁମେ ମେଘ ଆଡୁଆଳେ ଥାଇ
ଢ଼ାଳିଛ ଅମୃତ ମଧୁର ହସର ଧାରା,
ଅରୁଣ କିରଣେ ଚରଣ ଚଳାଇ ଆସି
ଲଲାଟେ ମାଖିଛ ହେ ଶୁଭ ପରଶ ପରା ।

ଏ ନୟନେ ମୋର ସଞ୍ଚିତ କେତେ ଛବି
କେତେ କାଳଧରି କେତେଲୋକେ ଦେଖେ ପୁଣ,
କେତେ କେତେ ନବ ଆଲୋକରେ ଦେଖେ ମୁହିଁ
ଅରୂପରେ କରେ କେତେ ରୂପ ଦରଶନ ।

କେହି ତ ନଜାଣେ କେତେ ଯୁଗ ଯୁଗ ଧରି
ପରାଣ ଆମର ରହିଅଛି କେତେ ଭରି,
କେତେ ସୁଖ ଦୁଃଖ, କେତେ ପ୍ରେମଗାନ ଅବା
କେତେ ଅମୃତ ଯାଏ ପ୍ରାଣେ ଝରି ଝରି ।।



ମୂଳଗୀତାଞ୍ଜଳିର '୨୨' କବିତାଟି ପ୍ରଥମ ପଲ୍ଲବର '୩' କବିତା

# ୨୩

ଏଥର ଆଉ ଚଳିବ ନାହିଁ ଲୁଚିଲେ ଆଡୁଆଳେ
ଡ଼ାକୁଛି ସଖା ! ଆସ ହେ ଆସ
ଅନ୍ତରେ ମୋ କର ହେ ବାସ,
ଲୁଚ ହେ ମୋର ହୃଦୟ ପୁରେ ସାଇଁ,
ଜାଣିବେ ନାହିଁ, ଖୋଜିବେ ନାହିଁ କେହି ।
ବିଶ୍ୱେ ଚାଲେ ତୁମର ଲୁଚକାଳି
ଖେଳ ହେ ଦେଶ ବିଦେଶେ କେତେ ଘୂରି,
ଏଥର ଆସ, ମୋ ମନ ପୁରେ ଧାଇଁ
ଦେବାକୁ ଧରା ଛଳନା କର ନାହିଁ ।
ଆସହେ ସଖା ! ବାରେ
ଏଥର ଆଉ ଚଳିବ ନାହିଁ ଲୁଚିଲେ ଆଡୁଆଳେ ।

ଜାଣେ ମୁଁ ଜାଣେ କଠିନ ମୋର ହୃଦ
ଯୋଗ୍ୟ ନୁହେଁ ଥାପିବ ତମ ପଦ ।
କୋମଳ କ'ଣ ହେବନି ହୃଦ ମମ,
ଲାଗିଲେ ଥରେ ପରଶ ବାଆ ତମ ?

ଜୀବନେ ଯଦି ସାଧନା ନାହିଁ ମୋର
ଝରିଲେ ସଖା ! ତମ କରୁଣା ଜଳ,
ପଲକେ କ'ଣ ପୁଲକ ଭରି
ଫୁଟିବ ନାହିଁ ଫୁଲ ?
ଫଳ କି ଫଳିବନି ?
ଏଥର ଆଉ ଆଡୁଆଳରେ ଲୁଚିଲେ ଚଳିବନି ।



ବୋଲପୁର- ଭାଦ୍ର

ମୂଳଗୀତାଞ୍ଜଳି ୨୪, ୨୫, ୨୬, ପ୍ରଥମ ପଲ୍ଲବର ୬୯,୮୪,୬୪ କବିତା

## ୨୭

ଭରା ଭୋଦୁଅ ଝରୁଛି ଆଜି
ବର୍ଷା ଝରଝର
ଆକାଶ ଚିରି ଆକୁଳ ଧାରା
ବହୁଛି ଅବିରଳ ।
ମାତିଛି ଝଡ଼ ପ୍ରଳୟ ଡାକି ଘନ,
ତୁହାକୁ ତୁହା ବର୍ଷାଧାରା
ଥରାଏ ଶାଳବନ ।
ଛୁଟଇ ଜଳ ଅଙ୍କାବଙ୍କା ଧାରେ,
ମେଘର ଜଟା ଫିଟାଇ କିଏ
ପ୍ରଳୟ ନୃତ୍ୟକରେ ।
ବର୍ଷା ସାଥେ ଛୁଟିଛି ମନ
ଲୋଟିଛି ଏଇ ଝଡ଼େ,
ମୋ ବୁକୁଭରା ଜୁଆର ଧାରା
କାହାର ପାଦେ ପଡ଼େ ।
ଅନ୍ତରର ଆନନ୍ଦ କଳରୋଳ
ତୁଟାଏ ବାଧା ବନ୍ଧନର ଡ଼ୋର ।
ଭାଦ୍ରବର ଏ ବାରିଧାରା
ପାଗଳ କରେ ପ୍ରାଣ,
ବାହାର ଆଉ ଭିତର କିଏ ବିଭୋର କରେ
ମତାଏ ମୋର ମନ ।



# ୨୮

ତୁମକୁ ପ୍ରଭୁ ! ଦେଖିବି ବୋଲି
ରହିଛି ସଦା ଚାହିଁ
ଜୀବନେ କେବେ ଦେଖା ମୁଁ ପାଏ ନାହିଁ ।
ମନଟା ଖାଲି ହେଲେବି କଇବଲ
ତଥାପି ତାହା ଲାଗଇ ମୋତେ ଭଲ ।

ପ୍ରଭୁ ହେ ! ତୁମ କରୁଣା ପାଇଁ
ଭିଖାରିର ହୃଦୟ ନେଇ,
ବସିଛି ତମ ଦୁଆରେ ଯାଇ
ମିଳେନି କୃପା ମୋତେ -
ସେଇ ପ୍ରତୀକ୍ଷାର ବେଳ,
ତଥାପି ତାହା ଲାଗଇ ମୋତେ ଭଲ ।

ଆଜି ଏଇ, ଜଗତର ଜନେ
ଆଗକୁ ସବୁ ଆଗେଇ ଗଲେ
କେ' କେତେ ଖୁସି ମନେ ।
କେ ନାହିଁ ସାଥୀ ମୋର
ତୁମକୁ ଖାଲି ଖୋଜୁଛି ନିରନ୍ତର ।
ଚାହିଁଛି ବ୍ୟାକୁଳିତେ
ତଥାପି ତାହା ଲାଗଇ ଭଲ ମୋତେ ।

ବିଶ୍ୱ ଏଇ ଅମୃତରେ ଭରା
ଆକୁଳ ଆଜି ଶ୍ୟାମଳ ଏଇ ଧରା ।
କାନ୍ଦେ ଖାଲି କାନ୍ଦେ ଅନୁରାଗେ,
ପାଏନି ଦେଖା
ମନରେ ବ୍ୟଥା ଜାଗେ ।
ହୁଏ ମୁଁ କଲବଲ
ତଥାପି ତାହା ଲାଗଇ ମୋତେ ଭଲ ।



## ୨୯

ଧନେ ଜନେ ପ୍ରଭୁ ! ଭରିଛ ଜୀବନ ମମ
ତଥାପି ତୁମକୁ ପାଇବାକୁ ଚାହେଁ ମନ,
ଅନ୍ତରେ ଅଛ ଆହେ ଅନ୍ତରଯ୍ୟାମୀ
ମୋଠାରୁ ଅଧିକ ମୋତେ ଜାଣ ତୁମେ ସ୍ୱାମୀ ।
କେତେ ସୁଖେ ଦୁଃଖେ ମଗ୍ନ ଥିଲେ ବି ମୁହିଁ
ଅନ୍ତର ଚାହେଁ ତୁମକୁ ପାଇବା ପାଇଁ ।

ଛାଡ଼ି ପାରିନି ମୁଁ ଜୀବନୁ ଅହଂକାର
ଘୂରି ବୁଲେ ଧରି ମସ୍ତକେ ତାର ଭାର ।
ଛାଡ଼ି ପାରିଲେ ମୁଁ ରକ୍ଷା ଯାଆନ୍ତି ପାଇ
ମନ ଖାଲି ଖୋଜେ ପ୍ରଭୁ ହେ !
ତୁମକୁ ପାଇବା ପାଇଁ ।
ତୁମକୁ ପାଇବା ପାଇଁ ।

ଯାହା ଅଛି ମୋର ଏ ସକଳ କେବେ ପ୍ରଭୁ !
ନିଜ ହାତେ ତୁମେ ତୋଳି ନେଇଯିବ ସବୁ,
ସବୁ ଛାଡ଼ି ସବୁ ପାଇବି, ତୁମକୁ ପାଇ
ମନ ଖାଲି ଖୋଜେ ପ୍ରଭୁ ହେ !
ତୁମକୁ ପାଇବା ପାଇଁ,
ତୁମକୁ ପାଇବା ପାଇଁ ।।



## ୩୨

ସବୁ ଭୟ ମୋର ଭାଙ୍ଗି ଦିଅ ପ୍ରଭୁ !
ନିର୍ଭୟ କର ମୋତେ
ଅଭୟ ନେତ୍ରେ ଚାହିଁ ଦିଅ ଥରେ
ଏ ଦହନ ଅଭିଘାତେ ।
ପାଶେ ଅଛ ତୁମେ ତଥାପି ପାରେନା ଜାଣି,
ଏଣେ ତେଣେ ମୋର ଆଖି ନେଇଯାଏ ଟାଣି ।
ହେ ପ୍ରାଣର ପ୍ରାଣ ହୃଦୟବିହାରୀ ସାଇଁ !
ହସାଇ ଦିଅହେ ହୃଦୟକୁ ହସେ ଚାହିଁ ।

ଦିଅ ହେ ପରଶ ଥରେ
କୁହ ମୋତେ କଥାବାରେ ।
ଦକ୍ଷିଣ ହାତ ତୋଳି
ରଖ ମୋତେ ତୁମେ ଧରି ।

ମୂଳଗୀତାଞ୍ଜଳିର '୩୦' ଓ '୩୧' କବିତା, ପ୍ରଥମ ପଲ୍ଲବର '୫୯' ଏବଂ '୧୫' କବିତା

ଯାହା କିଛି ମୁହିଁ ବୁଝିଛି ଜୀବନେ
ସବୁ ତ ଅଟଇ ଭ୍ରମ,
ଯା'କିଛି ଖୋଜିଛି
ଖୋଜିବାର ବ୍ୟତିକ୍ରମ ।
ମିଛରେ ହସୁଛି କାନ୍ଦୁଛି ମିଛେ ଖାଲି,
ଦେଖା ଦେଇ ପ୍ରଭୁ ! ଦୁଃଖ ମୋ ଦିଅ ଟାଳି ।
ଦୁଃଖ ମୋ ଦିଅ ଟାଳି ।



## ୩୩

ମନକୁ ମୋର ରହିଛି ଘେରି
ଭାବନା ଏଣୁ ତେଣୁ
ଅଲୋଡ଼ା ନାନା କଥା ମୋ ମନେ ଜମେ,
ଆବରଣର ଭାରାରେ ସଦା
ଆଖି ମୋ ଯାଏ ନଇଁ
ମନଟା ନାନା ଦିଗରେ ଖାଲି ଭ୍ରମେ ।
ଯାତନା ମୋର ବଢ଼ଇ ଅନୁକ୍ଷଣ
ପାଉନି ଛୁଇଁ ତମରି ଶ୍ରୀଚରଣ ।

ପ୍ରଭୁ ହେ ! ତମ ନିରବ ବାଣୀ
ମୋର ଏ ହୃଦୟରେ,
ନଯାଉ ଲିଭି ଜଗତ କୋଳାହଳେ ।
ସମସ୍ତଙ୍କ ଗହଣେ ପ୍ରଭୁ !
ଥାଅ ହେ ମୋର ପାଶେ,
ଢ଼ାଙ୍କି ରଖ ମୋତେ ହେ ! ଆଡୁଆଳେ ।
ଆଲୋକ ଭରା ଉଦାର ତ୍ରିଭୁବନ
ନିୟତ ରହୁ ମନରେ ମୋର..
ରହେ ମୁଁ ସଚେତନ ।



## ୩୪

ଆସ ହେ ଆସ ସଜଳ ଘନ
ବାଦଲ ବରଷଣେ
ବିପୁଳ ତୁମ ଶ୍ୟାମଳ ସ୍ନେହେ
ଆସ ହେ ଏ ଜୀବନେ ।
ଆସ ହେ ଗିରି ଶିଖର ଚୁମି
ଛାୟାରେ ଘେରି କାନନ ଭୂମି,
ଗଗନ ଛାଇ ଆସହେ ତୁମେ
ଗଭୀର ଗରଜନେ,
ଆସ ହେ ଆସ ସଜଳ ଘନ
ବାଦଲ ବରଷଣେ ।

---

ମୂଳଗୀତାଞ୍ଜଳିର '୩୪' କବିତାଟି ପ୍ରଥମ ପଲ୍ଲବର '୪୬' କବିତା

ବ୍ୟଥିତ ଘନ ନୀପର ବନ
ପୁଲକ ଭରା ଫୁଲେ
ଉଛୁଳି ଉଠେ କଳରୋଦନ
ନଦୀର କୂଳେ କୂଳେ ।
ଆସ ହେ ଆସ ହୃଦୟ ଭରା
ଆସ ହେ ଆସ ପିପାସା ହରା,
ଆସ ହେ ଆଖି ଶୀତଳକରା
ଘନାଇ ଆସ ମନେ,
ଆସ ହେ ଆସ ସଜଳ ଘନ
ବାଦଲ ବରଷଣେ ।



## ୩୭

ନିଶାର ସପନ ଛୁଟିଲାରେ
ଏଇ ଛୁଟିଲାରେ,
ତୁଟିଲା ବନ୍ଧନ ତୁଟିଲାରେ ।
ଅପସରି ଗଲା ପ୍ରାଣର ଯା'ବାଧା
ଏ ଜଗତ ବୁକେ ଲୋଟିଲାରେ !
ଅନ୍ତର ଶତଦଳର ସକଳ -
ଦଳ ଗୁଡ଼ିକ ଯେ ଫୁଟିଲାରେ
ତୁଟିଲା ବନ୍ଧନ ତୁଟିଲା ରେ ।

---

ଗୀତାଞ୍ଜଳିର '୩୭' କବିତାଟି ପ୍ରଥମ ପଲ୍ଲବର '୭୦' କବିତା

. ମୋ ଘର ଦୁଆର ଖୋଲିଗଲା ପଣି
ଉଭା ହେଲ ପ୍ରଭୁ ! ତୁମେ ନିଜେ ଆସି,
ନୟନ ଜଳରେ ମୋ ହୃଦୟ ଭାସି
ଶ୍ରୀଚରଣ ତଳେ ଲୋଟିଲାରେ
ତୁଟିଲା ବନ୍ଧନ, ତୁଟିଲାରେ.... ।

ଆକାଶ ବୁକୁର ପ୍ରଭାତ ଆଲୋକ
ଛୁଇଁବାକୁ ମୋତେ ବଢ଼ାଇଛି ହାତ,
ଭଗ୍ନ କାରାର ଏ ଦୁଆରେ ଆଜି
ଜୟ ଜୟ ଧ୍ୱନି ଉଠିଲାରେ ।
ନିଶାର ସପନ ଛୁଟିଲାରେ..
ତୁଟିଲା ବନ୍ଧନ ତୁଟିଲାରେ ।।



## ୩୮

ଶରତେ ଆଜି ଅତିଥି କିଏ
ଆସିଲେ ମୋର ଦ୍ୱାରେ
ଆନନ୍ଦେ ଗାନ ଗାଅରେ ମନ,
ଆନନ୍ଦ ଗାନ ଗା'ରେ ।
ନୀଳ ଆକାଶ ନିରବ କଥା
ଶିଶିର ଭିଜା, ଆକୁଳ ବ୍ୟଥା,
ଉଠୁରେ ବାଜି, ତୁମର ଆଜି
ବୀଣାର ତା'ରେ ତାରେ
ଆନନ୍ଦେ ଗାନ ଗାଅରେ ମନ
ଆନନ୍ଦ ଗାନ ଗା'ରେ ।

ଶସ୍ୟ ଖେଚର ସୁନାର ଗାନେ
ମିଶାଅ ସ୍ୱର, ସମାନ ତାନେ,
ଭସାଇ ଦେ'ରେ ସୁରର ନଇ
ଅମଳ ଜଳ ଧାରେ,
ଅତିଥି ଛିଡ଼ା ତାଙ୍କର ମୁଖେ
ଦେଖରେ ଦେଖ, ଗଭୀର ସୁଖେ
ଦୁଆର ଖୋଲି ତାଙ୍କରି ସାଥେ
ବାହାର ହୋଇ ଯା'ରେ
ଆନନ୍ଦେ ଗାନ ଗାଅରେ ମନ
ଆନନ୍ଦ ଗାନ ଗା'ରେ ।



## ୪୦

ହରାଏ ଯାହା, ଆଗୁଳି ତାହା
ବସିବି କେତେଦିନ
ପାରେନା ଜାଗି, ଭାବିବା ଲାଗି
ହେ ନାଥ ! ଅନୁକ୍ଷଣ ।
ଦିବସ ରାତି ବନ୍ଦ ଥାଏ ଦ୍ୱାର,
ଯେ ଆସେ ତାକୁ ସନ୍ଦେହରେ
ତଡ଼ଇ ବାରବାର ।

ମୂଳଗୀତାଞ୍ଜଳିର '୩୯' କବିତାଟି ପ୍ରଥମ ପଲ୍ଲବର '୧୩' କବିତା

ସେଇଥିପାଇଁ, ଆସନ୍ତି ନାହିଁ
ଆଉ କେ ମୋର ଘରେ
ଆନନ୍ଦମୟ ଭୁବନ ତୁମ
ବାହାରେ ଖେଳାକରେ ।
ଭାବୁଛି ତୁମେ ପାଅନି ପଥ
ଆସି, ହେ ଯାଅ ଫେରି,
ରଖିବା ପାଇଁ ଚାହେଁ ମୁଁ ଯାହା
ପାରେନା ରଖି ଧରି ।
ହରାଏ ବାରବାର,
ଧୂଳିରେ ଏକାକାର ।



## ୪୧

ଏଇ ମଳିନ ବସ୍ତ୍ର ଛାଡ଼ିବାକୁ ହେବ
ହେବ ଗୋ ଏଇ ଥର,
ନିଜର ଏଇ ମଳିନ ଅହଂକାର ।
ଦିନର କାମେ ଲାଗଇ ଧୂଳି
ଅନେକ ଦାଗ କେତେ ଯେ ମଳି,
ଏପରି ତପ୍ତ ହୋଇଛି ଏହି
ସହି ପାରିବା ଭାର,
ଏଇ ମଳିନ ବସ୍ତ୍ର ଛାଡ଼ିବାକୁ ହେବ
ହେବ ଗୋ ! ଏଇଥର ।

ଏଥର କାମ ହୋଇଲା ଶେଷ
ଦିନର ଅବସାନେ,
ହୋଇଲା ତାଙ୍କ ଆସିବା ବେଳ
ଜାଗଇ ଆଶା ପ୍ରାଣେ ।
କର ହେ ସ୍ନାନ ଏଥର ଯାଇ
ପ୍ରଣୟ ବାସ ପିନ୍ଧିବା ପାଇଁ
ସନ୍ଧ୍ୟାବନ କୁସୁମ ତୋଳି
ଗୁନ୍ଥି ଦିଅ ହାର
ସମୟ ହେଲା, ଆଉ ତ ନାହିଁ ବେଳ ।
ଆଉ ତ ନାହିଁ ବେଳ ।



## ୪୨

ଅଙ୍ଗେ ଅଙ୍ଗେ ପୁଲକ ଜାଗେ
ନୟନରେ ଘନ-ଘୋର,
ହୃଦୟକୁ ଆଜି ବାନ୍ଧିଛି କେଉଁ
ରଙ୍ଗ-ରାଗୀର ଡ଼ୋର !
ଆଜିର ଏଇ ଆକାଶ ତଳେ
ଜଳେ ସ୍ଥଳେ ଫୁଲେ ଫଳେ,
କିପରି ମନ ହରଣ କରି
ପ୍ରଭୁ ! ଛଡ଼ାଅ ମନ ମୋର !
ଅଙ୍ଗେ ଅଙ୍ଗେ ପୁଲକ ଜାଗେ
ନୟନରେ ଘନଘୋର ।

କିପରି ଖେଳ ହୋଇଲା ମୋ'ର
ତୁମରି ସାଥେ ଆଜି,
ପାଇବି କି ନା, ପାରୁନି ଭାବି -
ମୁଁ, ମନେ ମନେ ଖୋଜି ।
କି ରୂପ ନିଏ ଆନନ୍ଦ ଆଜି ମୋର
ନୟନେ ଖାଲି ଛୁଟଇ ଅଶ୍ରୁଜଳ ।
ବିରହ ଆଜି ମଧୁର ହୋଇ
ବିଭୋର କରେ ମନକୁ ଛୁଇଁ,
ଅଙ୍ଗେ ଅଙ୍ଗେ ପୁଲକ ଜାଗେ ମୋର
ହୃଦୟ ବାନ୍ଧେ, ରଙ୍ଗ ରାଖୀ ଡ଼ୋର ।।



## ୪୩

ତୁମର ଆଜି ଡ଼ାହାଣ ହାତ
ରଖନା ପ୍ରଭୁ ! ଢ଼ାଙ୍କି,
ଆସିଛି ନାଥ, ତୁମରି ପାଶେ
ବାନ୍ଧିବି ବୋଲି ରାଖୀ
ବାନ୍ଧିବି ଯଦି ତୁମରି ହାତେ -
ହୋଇବ ବନ୍ଧା ସକଳ ସାଥେ
ଯେଉଁଠି ଯିଏ ଅଛନ୍ତି, କେହି-
ରହିବେ ନାହିଁ ବାକି,
ଆସିଛି ସଖା! ତୁମରି ପାଶେ
ବାନ୍ଧିବି ବୋଲି ରାଖୀ ।

ନାହିଁ ତ ଆଜି ଭେଦର ଗାର
କେ ନୁହେଁ ଆଜି ଆପଣା ପର,
ତୁମରି ରୂପ ବିରାଜେ ଆଜି
ବାହାର ଆଉ ଘର,
ସରବେ ଆପଣାର ।

ବିରହେ ତୁମ ଯାଉଛି ମରି
କାନ୍ଦି କାନ୍ଦି ବୁଲୁଛି ଘୂରି,
କ୍ଷଣକ ପାଇଁ ଘୁଞ୍ଚାଅ ତାହା
ବିକଳେ ଉଠେ ଡ଼ାକି ।
ଆସିଛି ସଖା ! ତୁମରି ହାତେ
ବାନ୍ଧିବି ବୋଲି ରାଖୀ ।।



## ୪୫

ଆହେ ଜ୍ୟୋତିର୍ମୟ !
ଆସିଲ ତୁମେ ଆଲୋକ ବୁଣି
କରି ଆଲୋକମୟ ।
ଆଲୋକେ ତୁମେ ନୟନୁ ମୋର
ଅନ୍ଧକାର କରିଲ ଦୂର,
ତୁଟିଲା ମୋର ଭୟ ।
ଆହେ ଜ୍ୟୋତିର୍ମୟ ।

---
ମୂଳଗୀତାଞ୍ଜଳିର '୪୪' କବିତାଟି ପ୍ରଥମ ପଲ୍ଲବର '୧୬' କବିତା

ସକଳ ଆକାଶ ସକଳ ଧରା,
ଆନନ୍ଦର ହସରେ ଭରା,
ଯେ' ଦିଗେ ଚାହେଁ ନୟନ ଚାଳି
ସବୁତ ମନୋମୟ !
ଆହେ ଜ୍ୟୋତିର୍ମୟ

ଆଲୋକେ ତୁମ, ଗଛର ପତ୍ରେ
ଉଠଇ ନାଚି ପ୍ରାଣ,
ଆଲୋକେ ତୁମ, ପକ୍ଷୀର ନୀଡ଼େ
ଉଠଇ ଜାଗି ଗାନ ।
ଆଲୋକ ତୁମ, ଶ୍ରଦ୍ଧାରେ ଆସି
ପଡ଼ିଛି ମୋର ଦେହେ
ହୃଦୟେ ମୋର, ବିମଳ ହାତ
ବୁଲାଇ ଆଣେ ଆହେ !
ଆହେ ଜ୍ୟୋତିର୍ମୟ !
କରି ଆଲୋକ ମୟ ।।



## ୪୬

ତୁମରି ଆସନ ମାଟିପରେ ସଦା
ମୁଁ ଲୋଟୁ ଥିବି,
ତୁମରି ଚରଣ ଧୂଳିରେ ଧୂଳିରେ
ଧୂସର ହେବି ।
ସମ୍ମାନ ଦେଇ ଚିରଦିନ ମୋତେ
ଦୂରେଇ ରଖି,

ଏ' ସାରା ଜୀବନ, ଏଇପରି ପ୍ରଭୁ !
ଭୁଲାଇ ବକି ?
ଅପମାନରେ ଟାଣିନିଅ ପଛେ
ଚରଣେ ତବ
ତୁମରି ଚରଣ ଧୂଳିରେ ସେ ଲୋଟି
ଧୂସର ହେବ ।

ରହିବ ତୁମର ଯାତ୍ରୀ ଦଳର
ସବୁରି ପଛେ,
ସ୍ଥାନଦିଅ ତାକୁ ହେ କରୁଣାନିଧି !
ସବୁରି ନିଚେ ।
ପ୍ରସାଦ ତୁମର ପାଇବାକୁ ଲୋକେ
ଆସନ୍ତି ଧାଇଁ,
ଚାହିଁବନି କିଛି ଚାହିଁବନି ପ୍ରଭୁ !
ଚାହିଁବ ନାହିଁ ।
ସମସ୍ତଙ୍କ ଶେଷେ, ବାକିଯା'ରହିବ ତାହାକୁ ନେବ,
ତୁମର ଚରଣ ଧୂଳିରେ ଧୂଳିରେ ଧୂସର ହେବ ।।



---

ଗୀତାଞ୍ଜଳିର '୪୬' କବିତାଟି, ପ୍ରଥମ ଭାଗର '୧୦୦' କବିତାରେ ଅଛି

# ୪୮

ଆକାଶ ବୁକେ ଉଠିଲା ଫୁଟି
ଆଲୋକ ଶତଦଳ,
ପାଖୁଡ଼ା ସବୁ ଉଠିଲେ ଥରି-
ଚଉଦିଗେ ସେ ଗଲେରେ ମେଲି,
ଚହଟି ଦିଗନ୍ତର,
ଘୋଟିଲା ଅନ୍ଧକାର
ନିବିଡ଼ କଳାଜଳ ।
ମଝିରେ ମୁହିଁ ସୁନାର କୋଷେ
ବସିଛି ଆଜି ପରମ ତୋଷେ,
ରହିଛି ଘେରି, ମୁକୁଳେ ଧୀରେ
ଆଲୋକ ଶତଦଳ ।।

ଆକାଶବୁକେ ବତାସ ଢେଉ
ଉଠିଛି ପରା ମାତି
ଦିଗେ ଦିଗେ ଉଠଇ ବାଜି ଗାନ
ଦିଗେ ଦିଗେ ନାଚି ଉଠଇ ପ୍ରାଣ,
ଗଗନ ଛୁଆଁ ପରଶ ଢ଼ାଳେ
ସକଳ ଦେହ ପାତି ।
ପ୍ରାଣର ସାଗରେ ବୁଡ଼ାଇ ଦେଇ
ନେଇଛ ପ୍ରାଣ ବକ୍ଷେ ଫେଇ,
ଫେରି ଫେରି ମୋତେ, ସେ ଘେରି ଘେରି
ବତାସ ଉଠେ ମାତି ।

ଏ ମାଆ ମାଟି ବସିଛି
ଦଶଦିଗକୁ କାନି ପାରି,
ତା' କୋଳ ପାତି ଡାକଇ ଥିର୍ ଥିରି ।
ଆସ ହେ ଆସ, ସକଳ ଜୀବ,
ଆସହେ ଯିଏ ଯେଉଁଠେ ଥିବ,
ସକଳ ହାତେ ସକଳ ଦୁଃଖେ
ଅନ୍ନ ଦେବି ଭରି ।
ଭରିଛି ମନ ଗୀତେ ଗନ୍ଧେ-
ବସିଛି ମୁହିଁ ମହାନନ୍ଦେ,
ଏ ମାଟି ମା' ତା' କୋଳ ପାତି
ତା' କାନି ଟେକି, ରହିଛି ମୋତେ ଘେରି ।
ଡାକଇ ଥିରି ଥିରି ।

ଆଲୋକ ଆହେ ! ଆଲୋକ ଆହେ !
ତୁମକୁ ନମସ୍କାର,
ସକଳ ଅପରାଧକୁ ମୋର
କର ହେ ତୁମେ ଦୂର ।
ଜଗତ ପିତା ଆଶିଷ ଦିଅ
ଲଲାଟେ ମାଖି ମୋର,
ଆଲୋକ ଆହେ ! ତୁମକୁ ନମସ୍କାର ।
ତୁମକୁ ନମସ୍କାର ।

ବତାସ ଆହେ ! ବତାସ ଆହେ !
ଘେନ ମୋ ନମସ୍କାର,
ତୁଟାଇ ଦିଅ ସକଳ ଅବସାଦ
ସକଳ ଦେହେ ବୁଲାଇ ଆଣ
ପିତାଙ୍କ ଆଶୀର୍ବାଦ ।

ହେ ମାଟି ମା ! ପ୍ରଣତି ମୋର ଘେନ,
ପୂର୍ଣ୍ଣକର ଅପୂରା ଆଶା ମୋ'ର
ପିତାଙ୍କ ଶୁଭ ଆଶିଷେ ଭରୁ ଘର ।
ଏତିକି ଅଳି ମୋର
ଏତିକି ଅଳି ମୋର ।।



# ୪୯

ସେ ପରା କୋଳ ଅଛନ୍ତି ପାତି
ଆମରି ଏଇ ଘରେ,
ଆସନ ତାଙ୍କ ସଜାଇ ଦିଅ
ମନର ଅନୁସାରେ ।
ଆନନ୍ଦ ମନେ ଓଳାଇ ଦିଅ
ଯେତେକ ଧୂଳି ମଳି,
ଯତନେ ନେଇ ଅଳିଆତକ
ଦୂରରେ ଦିଅ ଢ଼ାଳି ।
ସିଞ୍ଚିଜଳ ଫୁଲର ଡାଲା
ସଜାଇ ଦିଅ ଘରେ
ଆସନଟିକୁ ସଜାଇ ଦିଅ
ମନର ଅନୁସାରେ ।

ସେ ପରାଛନ୍ତି ଆମ ଏ'ଘରେ
ଦିନ ଓ ରାତି ସାରା
ସକାଳ ବୁକେ ତାଙ୍କର ହସ
ଆଲୋକ ଝରେ ପରା ।
ପ୍ରଭାତରେ ଜାଗଇ ଯେବେ
ନୟନ ଖୋଲି ମୁହିଁ
ମୁଁ ଦେଖିପାରେ, ଆନନ୍ଦରେ
ଥାଆନ୍ତି ସିଏ ଚାହିଁ ।
ଶ୍ରୀମୁଖ ତାଙ୍କ ଉଜ୍ଜ୍ୱଳ ଆଭା
ଉଛୁଳି ଉଠେ ଘରେ
ସକାଳ ହସ ହିଲ୍ଲୋଳରେ .
ଆଲୋକ ତାଙ୍କ ଝରେ ।

ଆମରି ଘରେ ଥାଆନ୍ତି ବସି
ଏକଲା ସିଏ ନିତି,
କାମରେ ଆମେ ବାହାରି ଗଲେ
ଦୂରକୁ କାହାକତି,
ଆଗେଇ ଦେଇ ଫେରନ୍ତି ସିଏ-
ଦୁଆର ପାଖେ ଆମ,
ଆଗାଉ ଆମେ ଯାତ୍ରାପଥେ
ଆନନ୍ଦେ ଗାଇ ଗାନ ।

ଦିନର କର୍ମ ଜଞ୍ଜାଳରୁ
ବାହୁଡୁ ଯେବେ ଘରେ
ଦେଖୁ ସେ ତହିଁ ଏକଲା ବସି-
ଥାଆନ୍ତି ସେଇ ପୁରେ ।

ଶୋଇଲେ ଆମେ ଶଯ୍ୟାପରେ
ହୋଇଲେ ଅଚେତନ
ସେ ଜଗିବସି ଥାଆନ୍ତି ତହିଁ
ନିଭୃତରେ ପୁଣ ।

ଜଗତେ କେହି ପାରେନା ଦେଖି
ଜଳୁଛି ତାଙ୍କ ବତି,
ପଣତ ତଳେ ଦୀପଟି ଜଳେ
ଲୁଚି ସେ ଦିନ ରାତି ।
ତନ୍ଦ୍ରାଭିଜା ନୟନେ ଛୁଟେ
ସପନ ଅସୁମାର
ଅନ୍ଧକାରେ ସେ ବସି, ହସୁ-
ଥାଆନ୍ତି ବାରବାର ।।



## ୫୦

ଯେଉଁଠାରେ ପ୍ରାଣର ଦେବତା
ନିଭୃତରେ ଜାଗିଛନ୍ତି ଏକା,
ଆହେଭକ୍ତ ! ଖୋଲ ସେଇ ଦ୍ୱାର
ତାଙ୍କ ସାଥେ ହେବ ଆଜି ଦେଖା ।

ସାରାଦିନ ସମ୍ପୂର୍ଣ୍ଣ ବାହାରେ
ଘୂରି ଘୂରି କାହାକୁ ମୁଁ ଖୋଜେ,
ସନ୍ଧ୍ୟା ବେଳ ଆରତି, ଏ ଯାଏ
ଏ ଜୀବନେ, ଶିଖିନାହିଁ ମୁଁଜେ ।

ତୁମ ସେଇ ଜୀବନ ଆଲୋକେ
ଏ ଜୀବନ ପ୍ରଦୀପ ମୋ' ଜାଳ,
ହେ ପୂଜାରୀ ! ଆଜି ନିଭୃତରେ
ସଜାଇବି ମୋର ପୂଜା ଥାଳ ।

ଯେଉଁଠାରେ ନିଖିଳ ସାଧନା
ପୂଜାଲୋକ କରଇ ଅର୍ପଣ,
ସେ ଜ୍ୟୋତିରେ ମିଶିଯିବି ମୁହିଁ
କ୍ଷୀଣ ଏକ ଜ୍ୟୋତିରେଖା ସମ ।



## ୫୧

କେଉଁ ଆଲୋକର ଜୀବନ ଦୀପକୁ
ଜଳାଇ ଆସ ଏ ପୁରେ,
ସାଧକ ହେ ! ତୁମେ ପାଗଳ ପ୍ରେମିକ !
ଆସ ଏଇ ଧରା ପରେ ।
ଏଇ ଆକୁଳିତ ସଂସାରେ ସଦା
ତୁମରି ପ୍ରାଣରବୀଣା,
ଦୁଃଖ ଆଘାତେ ଝଙ୍କୃତ ହୁଏ ଯିନା ।
ଘୋର ସେ ବିପଦ କାଳେ,
କେଉଁ ଜନନୀର ହସମୁଖ ଦେଖି
ହସିଉଠ ବିହ୍ବଳେ ।

ଘୂରିବୁଲ ତୁମେ କା'ର ସନ୍ଧାନେ କୁହ,
ସକଳ ସୁଖରେ ସଂଯୋଗ କରି-
ଦାରୁଣ ଦହନ ଲୁହ ।
ଏପରି ବ୍ୟାକୁଳ କରି,
କିଏ ସେ ତୁମକୁ କନ୍ଦାଏ ଯା'ରେ-
ଭଲପାଅ ପ୍ରାଣ ଭରି !

ତୁମର ଭାବନା କିଛି ନାହିଁ କିଏ-
ନିଜର ସାଙ୍ଗ ସାଥୀ,
ସେଇ ଭାବନାରେ ରହିଥାଏ ମନମାତି ।
ମରଣକୁ ତୁମେ ଭୁଲି;
କେଉଁ ଅନନ୍ତ ପ୍ରାଣ ସାଗରରେ
ଆନନ୍ଦେ ଭାସ ଖାଲି ।



## ୫୨

"ମୋ ପାଶରେ ଅଛ -
ଆପଣାର ତୁମେ, ଅତି ଆପଣାର ବୋଲି
କହିବାକୁ ଦିଅ, କହିବାକୁ ଦିଅ
ଏଇ, ଗୋଟିଏ କଥାକୁ ଖାଲି ।
ଏଇ ଜୀବନର ସକଳ ଆନନ୍ଦ
ଆଧାର ହେ ତୁମେ ସଖା !
ଅତି ଆପଣାର, ଅତି ଆପଣାର ଏକା !

ମୋତେ ଦିଅ ଆହେ ! ସୁମଧୁର ସ୍ୱର
ମୋ ବଚନ ତୁମେ କର ହେ ମଧୁର
ତୁମେ ମୋର ପ୍ରିୟତମ,
ଏଇ କଥା ଗୋଟି, ରଟୁ ଏ ରସନା ମମ ।

ଏଇ, ନିଖିଳ ଆକାଶ ଧରା
ପ୍ରଭୁ ! ତୁମ ଦାନେ ଏହା ଭରା ।
ହୃଦୟ ଭରି ମୁଁ ଏ'କଥାଟି କହେ
ସଖାହେ ! ଜୀବନ ସାରା ।

ଆସ ଆସ ଏଇ ଦୁଃଖୀ ଜନର ପଥେ
ତୁଚ୍ଛକୁ ତୁମେ, ଭଲପାଅ ହୃଦ ଗତେ ।
ଛୋଟ ମୁଖେ ମୋର କହିବାକୁ ଦିଅ-
ଏଇ କଥାଟିକୁ ଖାଲି,
ଆନନ୍ଦ ପାଇବି ବୋଲି ।

●

## ୫୩

ନତ କର ମୋତେ, ନତକର ମୋତେ
ତୁମରି ଚରଣ ତଳେ,
ଚଳାଅ ମୋମନ, ଭସାଅ ମୋ ମନ
ନିଖିଳ ନୟନ ଜଳେ ।

ଅହଂକାରର ଉଚ୍ଚ-ଅଚଳେ
ବସିଅଛି ମୁହିଁ ଏକା,
ସକଳ ଦର୍ପ ପାଷାଣ ଆସନ
ଧୂଳିରେ ଲୋଟାଅ ସଖା ।

ଭାଙ୍ଗି ଦିଅ ହେ ! ତା'ରେ
ନତକର ମୋତେ, ନତକର ମୋତେ
ତୁମରି ଚରଣ ତଳେ ।

କାହିଁପାଇଁ ମୁହିଁ ଗର୍ବ କରିବି
ବ୍ୟର୍ଥ ଜୀବନ ମମ,
ତୁମରି ବିହୁନେ ଅଟଇ ମୋ'ର
ଭରାଗୃହ ପରାଣୂନ୍ୟ ।

ଦିନର କାମ ମୋ' ହଜିଯାଇ ଅଛି
କେଉଁ ସେ ଅତଳ ତଳେ,
ବ୍ୟର୍ଥ ନ ହେଉ ସଞ୍ଜ ଆରତି
ଉପାସନା ଅବହେଳେ ।
ନତ କର ମୋତେ ତୁମରି ଚରଣ ତଳେ ।
ପ୍ରଭୁ ! ତୁମରି ଚରଣ ତଳେ ।



## ୫୪

ଆଜି ଗନ୍ଧବିଧୂର ସମୀରଣେ
କା'ର ସନ୍ଧାନେ ଘୂରେ ବନେ ବନେ ।
ଆଜି କ୍ଷୁବ୍ଧ ନୀଳାଭ ଆକାଶରେ
ଏବେ, କା'ର କ୍ରନ୍ଦନ ସୁରଝରେ !

ଦୂର ଦିଗନ୍ତ ସଙ୍ଗୀତ ସେ'ତ ସକରୁଣ
ଚିନ୍ତା ଓ ମୋର ଚେତନାକୁ କରେ ଜାଗରଣ ।
ଆଜି ଖୋଜୁଅଛି କା'ରେ ମନେ ମନେ
ଗନ୍ଧ ବିଧୂର ସମୀରଣେ ।

ଆଗୋ !
କେଉଁ ନନ୍ଦନ-ରାଗେ ଲାଗି
ସୁଖ ଉଚ୍ଛୁକେ-
ଯଉବନ ମୋର ଉଠେଜାଗି ।
ଆଜି ଆମ୍ର ମୁକୁଳ ସୁରଭିତ
ନବ ପଲ୍ଲବ, ମର୍ମର ଛନ୍ଦେ ମୁଖରିତ ।
ଚନ୍ଦ୍ର କିରଣ ସୁଧା ସିଞ୍ଚିତ ଆକାଶରେ,
ଅଶ୍ରୁ ସରସ ମନ୍ଦ୍ରିତ ମହା ଆନନ୍ଦରେ ।

ଆଜି ପୁଲକିତ କା'ର ଦରଶନେ,
ଗନ୍ଧ ବିଧୂର ସମୀରଣେ ।



## ୫୫

ଆଜି, ବସନ୍ତ ଆସିଛି ତୁମ ପୁରେ
ଅବଗୁଣ୍ଠିତ-
ତବ କୁଣ୍ଠିତ, ଜୀବନରେ ।
ବିଡ଼ମ୍ବିତ ତାକୁ କର ନାହିଁ,
ଆଜି ଆସିଅଛି, ସିଏ ଧାଇଁ ।

ଆଜି, ହୃଦୟ ପାଖୁଡ଼ା ଦିଅ ଖୋଲି
ଆଜି, ଭୁଲ ଆପଣାକୁ , ଯାଅ ଭୁଲି ।
ସଙ୍ଗୀତ ଏଇ, ମୁଖରିତ କର ଗଗନରେ
ତବ, ମଧୁର ଗନ୍ଧ ତରଙ୍ଗରେ ।
ଖୋଲା, ଏ ଭୁବନେ ହୋଇ ଦିଗହରା
ବୁଣ, ମାଦକ ମାଧୁରୀ ଭବସାରା ।

ଅତିନିବିଡ଼ ବେଦନା ବନ ବୁକେ
ଆଜି ପଲ୍ଲବ ଦଳେ ବାଜି ଉଠେ ।
ଦୂର ଗଗନରେ, କା'ର ପଥ ଚାହିଁ
ଯାଚେ, ବ୍ୟାକୁଳ ବସୁଧା ତା'ରି ପାଇଁ ।
ଦକ୍ଷିଣା ପବନ ବାଜୁଅଛି ମୋର ପରାଣରେ
କା'ରେ, ହାତପାତି ମାଗେ ପୁରେ ପୁରେ ।
ଆଜି ସୁରଭି ବିଭୋର ଏ' ରଜନୀ
କା' ଚରଣ ଛୁଇଁ, ଧରଣୀରେ ଏଇ ଜାଗିଲାଣି
ଆହେ ସୁନ୍ଦର ! ପ୍ରାଣଯାଇଁ
ଗମ୍ଭୀର ଏଇ, ଆହ୍ୱାନ ତୁମ କାହାପାଇଁ !



## ୫୭

ଏଥର ତୁମେ ନିଅ ହେ ନାଥ ! ମୋତେ
ହୃଦୟ ମୋର ନିଅ ହେ କାଢ଼ି,
ଫେରନା ଖାଲି ହାତେ ।
ନିଅ ହେ ନାଥ ମୋତେ ।

ତୁମରି ବିନା ଦିନ ମୋଗଲା ଚାଲି
ଆଉ ମୁଁ ପଛେ ଚାହିଁବି ନାହିଁ ଫେରି ।
ମିଶୁ ତା' ଧୂଳିଶେଯେ,
ଆଲୋକେ ତୁମ, ଜୀବନ ମୋରମେଲି-
ରହିବି ଜାଗି ମୁଁ ଯେ ।

---

'୫୭' କବିତାଟି ପ୍ରଥମ ପଲ୍ଲବର '୪୯' କବିତରେ ଅଛି

କେଉଁ ଆବେଶେ କି କଥା ପାଇଁ
ପଥ ପ୍ରାନ୍ତରେ ଘୂରୁଛି ମୁହିଁ ।
ଭ୍ରମୁଛି ଏଣେ ତେଣେ,
ଏଥର ତୁମେ ଶୁଣାଅ ତୁମ ବାଣୀ,
ମୋ ବୁକୁ ପାଶେ ମୁଖଟି ରଖି ପୁଣି ।

ଗୋପନେ ମନେ ରହିଛି ଲୁଚି
କଳୁଷ କେତେ, କେତେ ଯେ ପ୍ରତାରଣା
ସେଇଥିପାଇଁ ମୋତେ ହେ ଫେରାଅନା ।
ପ୍ରଭୁ, ନିଅହେ ସବୁନିଅ,
ଅଗ୍ନି ମୁଖେ ଦିଅହେ ବାଡ଼ି ଦିଅ ।



## ୫୯

ଏଥର ନିରବ କରିଦିଅ ଆହେ
ତୁମ ଏ ମୁଖର କବିରେ,
ତା' ହୃଦ ବଂଶୀ ନେଇଯାଅ ହାତେ
ବଜାଅ ହେ ! ନିଜେ ଗଭୀରେ ।
ନିଶୀଥ ରାତିର ନିବିଡ଼ ସ୍ୱରେ
ବଂଶୀରେ ତାନ ଭରି, ତା ତାଳେ,
ତୋଳିଦିଅ ଝଙ୍କାର,
ସ୍ତବ୍ଧକର ହେ ! ଚନ୍ଦ୍ରମା ପୁରୀ
ଗ୍ରହ ତାରାମଣ୍ଡଳ ।

---

'୫୮' କବିତାଟି ପ୍ରଥମ ପଲ୍ଲବର '୩୯' କବିତାରେ ଅଛି ।

ଯାହା ସବୁ ମୁହିଁ ଆସିଛି ଛାଡ଼ି
ଜୀବନ ମରଣ କୋଳେ
ସେ ସୁରର ତାନେ ମିଶନ୍ତୁ ସରବେ
ତୁମରି ଚରଣ ତଳେ ।

ଏକାକୀ ବସିମୁଁ ଶୁଣିବି ବଂଶୀ
ନିବିଡ଼ ଅନ୍ଧକାରେ
ଅନେକ ଦିନର ବାକ୍ୟରାଶି ମୋ
ଯିବ ଭାସି ନିମିଷରେ ।
ପ୍ରଭୁ ! ଯିବ ଭାସି ନିମିଷରେ ।



## ୭୦

ବିଶ୍ୱ ଯେବେ ହେ ! ନିଦ୍ରା ମଗନ
ଗଗନ ଅନ୍ଧକାର,
କିଏ ଆସି ସିଏ, ମୋ'ବୀଣାର ତା'ରେ
ଦେଲେ ସୁର ଝଙ୍କାର !
ନୟନୁ କେ ନେଲେ ନିଦ୍ରା ଛଡ଼ାଇ
ଆଣିଲେ କେ' ମୋତେ ଶୟନୁ ଉଠାଇ
ନେତ୍ର ଖୋଲି ମୁଁ ଅନାଇଲି ଯେବେ
ଦେଖା ପାଇଲିନି ତା'ର ।
ଗଗନ ଅନ୍ଧକାର ।

ଜାଣେ ନା, ବିପୁଳ ବାଣୀ ତାନ କେଉଁ
ବାଜଇ ବ୍ୟାକୁଳ ସୁରେ,
ବିଧୂର ତା'ର ଗୁଞ୍ଜରଣରେ
ମୋ ପରାଣ ଆଜି ଝୁରେ ।

କେଉଁ ବେଦନାର ଅଶ୍ରୁ ଆବେଗେ
ଭରିଯାଏ ହୃଦ ବିଷାଦିତ ରାଗେ,
ଜାଣିନି ବୁଝିନି କା' ଗଳାରେ ମୁହିଁ
ତୋଳିବି କଣ୍ଠ ହାର ।
କିଏ ଆସି ସିଏ ମୋ' ବୀଣାର ତାରେ
ଦେଲେ ସୁର ଝଙ୍କାର !
ଗଗନ ଅନ୍ଧକାର !



## ୬୩

ହାରିବାଟା ମୋର,
ମାନିଅଛି ମୁହିଁ, ମାନିଅଛି,
ଯେତିକି ତୁମକୁ ଠେଲି ଦେଇଛି ମୁଁ
ସେତିକି ଆଘାତ ଲାଗିଅଛି-
ମୋତେ, ଲାଗିଅଛି ।
ମୋର ଏ ଚିତ୍ତ ଗଗନୁ ତୁମକୁ
ଆଡୁଆଳେ କିଏ ରଖିବାକୁ,
ଚାହିଁବନି ସିଏ ସହିବାକୁ ତାହା
ସହିବାକୁ ,
ବାରବାର ମୁହିଁ ଅଛି ଜାଣି,
ହାରିବାଟା ମୋର ଅଛିମାନି ମୁହିଁ
ଅଛି ମାନି ।

---

'୬୧' କବିତାଟି ପ୍ରଥମ ପଲ୍ଲବର '୨୬' କବିତାରେ ଅଛି ।
'୬୨' କବିତାଟି ପ୍ରଥମ ପଲ୍ଲବର '୪୫' କବିତାରେ ଅଛି ।

ଅତୀତ ଜୀବନ ଛାଇପରି ପରା
ଚାଲିଅଛି ସଦା ପଛେ ପଛେ,
ମାୟା ବଂଶୀର ସ୍ୱର ଡାକେ
ମୋତେ, ମିଛେ ମିଛେ ।
ଚାଲିଥାଏ ମୁହିଁ ତା'ରି ସାଥେ
ଧରା ଦେଇଅଛି ତୁମ ହାତେ ।
ମୋ ଜୀବନେ ଅଛି ଯାହା କିଛି
ତୁମ ଏ ଦୁଆରେ ଆଣିଅଛି ମୁହିଁ
ଆଣିଅଛି ।
ହାରିବାଟା ମୋର ମାନି ଅଛି ।



## ୬୪

ଗୋଟି ଗୋଟିକରି ପୁରୁଣା ତାରକୁ ଖୋଲ
ସିତାରଟିକୁ ନୂଆ କରି ବାନ୍ଧି ତୋଳ ।
ହୋଇଛି ଶେଷ ଦିନର ମେଳା,
ବସିବ ସଭା ସନ୍ଧ୍ୟା ବେଳା,
ସେ' ଶେଷସ୍ୱର ବଜାଇବରେ
ହେଲା ଆସିବା ବେଳ,
ସିତାର ଟିକୁ ନୂଆକରି ବାନ୍ଧି ତୋଳ ।

ଦୁଆର ତୁମ ଦିଅ ଗୋ ! ଖୋଲି
ଅନ୍ଧାର ଆକାଶ ପରେ,
ସପ୍ତ ଲୋକର ନିରବତା ଆଜି
ଆସୁଗୋ ତୁମରି ପୁରେ ।

ଏତେଦିନ ଧରି ଯେ' ଗାଇଛି ଗାନ
ଆଜି ହୋଇଯାଉ ତା'ର ଅବସାନ,
ସିତାରଟି ତୁମ,
କେବଳ ନିଜର ବୋଲି,
ସେ କଥାଟି ଯାଅ ଭୁଲି ।
ପୁରୁଣା ତାରକୁ ଖୋଲ,
ସିତାରଟିକୁ, ନୂଆ କରି ବାନ୍ଧି ତୋଳ ।
ନୂଆ କରି ବାନ୍ଧି ତୋଳ ।



## ୬୫

ତୁମ ଗୀତ ଗାଇ
କେବେ ମୁଁ ହୋଇଲି ବାହାର
ତା' ନୁହେଁ ଆଜିର ଆଜିର ।
ଭୁଲି ଯାଇଅଛି କେବେଠୁ ଖୋଜୁଛି ତୁମକୁ
ତାହା ମଧ୍ୟ ନୁହେଁ ଆଜିର ।

ଝରଣା ଯେପରି ବାହାରି ଯାଏ
ଜାଣେ ନାହିଁ ସିଏ କାହାକୁ ଚାହେଁ,
ସେଇପରି ମୁହିଁ ଆସିଛି ଧାଇଁ
ଆଜିଏ ଜୀବନ ଧାରାକୁ ବାହି ।
ହେଲି ମୁଁ ବାହାର, ବାହାର,
ଏ ନୁହେଁ, ଆଜିର ଆଜିର ।

ତୁମକୁ ଡାକିଛି କେତେ ଯେ ନାମରେ
କେତେ ଛବି ଆଙ୍କିଅଛି ମୁଁ ମନରେ,
ଚାଲିଅଛି ମୁହିଁ କି ଆନନ୍ଦଭରେ
ଏ ନୁହେଁ ଆଜିର ଆଜିର,
ଆବେଦନ ଏହା କେବେଠୁ ସେ କେତେକାଳର ।
ପୁଷ୍ପ ଯେପରି ରହେଟି ଅନାଇ
ରହେ ଉଜାଗର ସେ ଆଲୋକ ପାଇଁ,
ସେଇପରି ରହେ ମୁହିଁ,
ହୃଦୟକୁ ମୋର, ତୁମରି ଆଶାରେ ଛାଇ
ତା' ନୁହେଁ ଆଜିର ଆଜିର,
ଏହା ଅଟେ କେତେ କାଳର ।



## ୭୭

ନାହଁ ମୋ' ଶକ୍ତି ବହିବା ପାଇଁ
ତୁମରି ପ୍ରେମ ଭାର,
ସଂସାରେ ଏ'ତୁମ ମୋ' ମଧ୍ୟେ
ରହିଛି ଏତେ ଦୂର ।
କରୁଣାକରି ରଖିଛ ନାଥ !
ଅନେକ ବ୍ୟବଧାନ,
ଦୁଃଖ ସୁଖ ଅନେକ ବାଧା
ଧନ ଓ ଜନ, ମାନ ।
ଅନ୍ତରାଳୁ କ୍ଷଣେ କ୍ଷଣେ କ୍ଷଣ କ୍ଷଣକେ
ଆଭାସେ ଦିଅ ଦେଖା
କଳା ମେଘର ଫାଙ୍କେ ଫାଙ୍କେ
ରବିର ମୃଦୁ ରେଖା ।

ଯା' ଶକ୍ତିଥାଏ ବହିବ ବୋଲି,
ଅସୀମ ପ୍ରେମ ଭାର
ଦୂରେଇବାର ସକଳ ପର୍ଦ୍ଦା,
କର ହେ ! ତୁମେ ଦୂର ।
ନରଖ ତା'ର ଘରର ମୋହ
ନ ରଖ ତା'ର ଧନ,
ପଥକୁ ଆଣି କରହେ ତାକୁ
ଦରିଦ୍ର ଅକିଞ୍ଚନ ।
ନଥାଏ ମାନ ଅପମାନ, ଟିକିଏ ଲଜ୍ଜା ଭୟ
ପାରେ ସେ' କରି ଜୟ ।

ତୁମେଇ ତା'ର ବିଶ୍ୱମୟ
ଅଟ ହେ ପ୍ରଭୁ ! ଏକା,
ଆଗକୁ ଥାଏ ସେ ଚାହିଁ ସଦା
ପାଇବ ବୋଲି ଦେଖା ।
କେବଳ ମାତ୍ର ତୁମରି ଭାବେ
ପୂରଣ କରି ପ୍ରାଣ
ରଖଇ ଅବିରାମ ।
ଏପରି ଦୟା ପାଇଛି ଯେହୁ
ନଥାଏ ଲୋଭ ସୀମା,
ସକଳ ଲୋଭ କରେ ସେ ଦୂର,
ତୁମକୁ ପ୍ରଭୁ !
କରିବ ବୋଲି ସେନା ।



# ୬୭

ସୁନ୍ଦର ତୁମେ ଆସିଥିଲ ଆଜି ପ୍ରାତେ
ଅରୁଣ ବର୍ଣ୍ଣ ପାରିଜାତ ନେଇ ହାତେ ।
ନିଦ୍ରିତ ପୁରୀ ପଥିକ ନଥିଲେ ପଥେ
ଚାଲିଗଲ ଏକା, ତୁମ ସୁବର୍ଣ୍ଣ ରଥେ ।
ମୋର ବାତାୟନେ ଅଟକି ଥରକ ପାଇଁ
ଚାହିଁଥିଲ ତୁମେ କରୁଣ ନୟନ ଫେଇ ।
ସୁନ୍ଦର ତୁମେ ଆସିଥିଲ ଆଜି ପ୍ରାତେ
ଅରୁଣ ବର୍ଣ୍ଣ ପାରିଜାତ ନେଇ ହାତେ ।

ସ୍ୱପ୍ନ ମୋ'ର ଭରିଥିଲା କେଉଁ ଗନ୍ଧେ
ଅନ୍ଧାର ଘର ଥରିଲା ଆନନ୍ଦ ଛନ୍ଦେ ,
ଧୂଳି ଧୂସରିତ ନିରବ ବୀଣାଟି ମୋ'ର
ତୋଳିଥିଲା କେତେ ଅନାହତ ଝଙ୍କାର ।

ବାରବାର ମୁହିଁ ଭାବିଛି ପଡ଼ିବି ଉଠି
ଆଳସ୍ୟ ତେଜି ଯିବି ମୁହିଁ ପଥେ ଛୁଟି ।
ଉଠିଲା ବେଳକୁ ଚାଲି ଯାଇଥିଲ ରଥେ
ସାକ୍ଷାତ ମୋର ହେଲା ନାହିଁ ତୁମ ସାଥେ ।
ସୁନ୍ଦର ତୁମେ ଆସିଥିଲ ଆଜି ପ୍ରାତେ
ଅରୁଣ ବର୍ଣ୍ଣ ପାରିଜାତ ଧରି ହାତେ ।।



'୬୮' କବିତାଟି ପ୍ରଥମ ଭାଗର '୯୭' କବିତାରେ ଅଛି

## ୬୯

ଏଇ ଯେ ତରୀ ଦେଲାରେ ଖୋଲି
ତୋର ଏ'ବୋଝ ନେବ କେ'ତୋଳି,
ବାହାରି ଅଛି ଆଗକୁ ଯିବୁ ଯେବେ,
ଯା'କିଛି ଅଛି ପଛର ମୋହ
ପଛେଇ ଦେ' ତେବେ ।
ପିଠିରେ ତାକୁ ବୋହିଛୁ ବୋଲି ବାଟେ
ଏକଲା ତୁହି ଗଲୁରେ ରହି ଘାଟେ ।

ତୋ'ଘର ଘୋର ସଂସାର ବୋଝ
ଆଣିଛୁ ଟାଣି ଟାଣି,
ଏପାରି ଘାଟେ ରଖିଛୁ ସବୁ ଆଣି ।
ତାହା ଯେ' ତୋତେ ଟାଣୁଛି ବାରବାର
ଫେରିଛୁ ବୋଲି, ନାହିଁକି ମନେ ତୋ'ର ?

ସକଳ ବୋଝ ଦେ'ରେ ଠେଲି ଦୂରେ
ମାଝିକୁ ଏବେ ଡ଼ାକିଦେ' ଆଉଥରେ ।
ଜୀବନଟାକୁ ଉଜାଡ଼ି ଦେଇ
କର ରେ ! ସମର୍ପଣ -
ଚିନ୍ମୟ ସେ ଚରଣ ତଳେ,
ଅଜାଡ଼ି ତନୁ ମନ ।
ସକଳ ବୋଝ ଦେ'ରେ ଠେଲି ଦୂରେ
ମାଝିକୁ ଏବେ ଡ଼ାକିଦେ' ଆଉଥରେ ।।



# ୭୦

ଚିତ୍ତ ମୋର ହଜିଛି ଆଜି
ମେଦୁର ମେଘ ଗାନେ,
କୁଆଡ଼େ ସିଏ ଛୁଟିଛି ଏବେ
କିଏ ବା ତାହା ଜାଣେ ?

ବିଜୁଳି ତା'ର ବୀଣାର ତାରେ
ଆଘାତ କରେ ବାରେବାରେ,
ବୁକୁରେ ତା'ର ବଜ୍ର ବାଜେ
ଗଭୀର ମହା ତାନେ,
ଚିତ୍ତ ମୋର ହଜିଛି ଆଜି
ମେଦୁର ମେଘ ଗାନେ ।

ପୁଞ୍ଜ ପୁଞ୍ଜ ଭାରେ ଭାରେ
ନିବିଡ଼ ନୀଳ ଅନ୍ଧକାରେ,
ଜଡ଼ାଇ ନେଲା ଅଙ୍ଗମୋର
ବେପଥୁ ତୋଳି ପ୍ରାଣେ,
ମେଦୁର ମେଘ ଗାନେ ।

ପାଗଳ ବାତ ନୃତ୍ୟରତ
ହୋଇଲା ମୋର ସାଥୀ
ଅଟ୍ଟହାସେ ଧାଏଁ ସେ କେଣେ
ବାରଣ କା'ର ନାହିଁ ସେ ମାନେ,
ସେ ଉଠି ଅଛି ମାତି ।
ଚିତ୍ତ ମୋର ହଜିଛି ତାର ଗାନେ
ମେଦୁର ମେଘ ତାନେ ।।

●

---

'୭୧' କବିତାଟି ପ୍ରଥମ ପଲ୍ଲବର '୧୯' କବିତା

# ୭୨

ଯେତେଥର ଦୀପ ଜାଳିବାକୁ ଚାହେଁ
ଲିଭିଯାଏ ବାରବାର,
ମୋ ଜୀବନେ ଆଜି ତୁମର ଆସନ
ଗଭୀର ଅନ୍ଧକାର ।
ଯେ ଲତାଟି ଅଛି, ଶୁଖିଛି ତା'ମୂଳ
କଢ଼ ଧରି ତା'ର ଫୁଟେ ନାହିଁ ଫୁଲ,
ଜୀବନରେ ମୁହିଁ ତୁମକୁ ଯେ ସେବେ -
ଖୀଲି,
ବେଦନାର ଉପହାରେ,
ଯେତେଥର ଦୀପ ଜାଳିବାକୁ ଚାହେଁ
ଲିଭିଯାଏ ବାରେବାରେ ।

ପୂଜାର ଗୌରବ ପୁଣ୍ୟ ବିଭବ
କିଛି ନାହିଁ, ନାହିଁ ଲେଶ
ଏ ତୁମ ପୂଜାରୀ ପିନ୍ଧି ଆସିଛି
ଲଜ୍ଜାର ଦୀନ ବେଶ ।
ଉତ୍ସବେ ତା'ର କେହି ଆସିନାହିଁ
ସାଜ ସଜ୍ଜା ନାହିଁ, ବଂଶୀ ବାଜୁ ନାହିଁ,
କାନ୍ଦି ତୁମକୁ ଆଣିଅଛି ଡ଼ାକି
ଭଙ୍ଗା ଦେଉଳ ଦ୍ୱାରେ ।
ଯେତେଥର ଦୀପ ଜାଳିବାକୁ ଚାହେଁ
ଲିଭିଯାଏ ବାରେ ବାରେ ।



## ୭୩

ସବୁରିଠାରୁ ରଖିବି ଦୂରେ
ତୁମକୁ ଅନ୍ତରାଳେ,
ନାହିଁ ତ ମୋର 'ପୂଜାର ଘର'
ତୁମକୁ ତେବେ -
ପାଇବି କାହୁଁ ଘରେ !
ଦିନ ରାତି ସବୁରି ହାତେ
ମୁଁ ଅବା ସିଏ ସବୁରି ସାଥେ -
କରୁଣାମୟ ! ଦେବ ହେ ଯଦି ଧରା,
ତୁମକୁ ତେବେ ରଖିବି ଧରି ପରା ।

ସମ୍ମାନରେ କରିବି ବୋଲି -
ତୁମରି ଉପାସନା,
ନିଃସ୍ୱ ମୋର ଶୂନ୍ୟପୁରୀ
କିପରି ହେବ ଧେନା !
ଆହେ ପରାଣ ସ୍ୱାମୀ !
କରିବ ସିଏ କି ଆୟୋଜନ ପୁଣି !

ତୁମକୁ ଯଦି ପାଏ ମୁଁ ଭଲ
ବାଜୁ ଏ'ବଂଶୀ ତୋଳୁ ତା'ସ୍ୱର
ଫୁଟୁରେ ଫୁଲ କାନନେ ମୋର
ଆପଣା ଛାଏଁ, ମହକ ତା'ର ଢାଳି,
ପ୍ରଭୁ ! ତୁମରି ପାଇଁ ଖାଲି ।
ତୁମରି ପାଇଁ ଖାଲି ।।



# ୭୪

ବକ୍ଷେ ତୁମର ବାଜୁଛି ବଂଶୀ
ତା ନୁହେଁ ସହଜ ଗାନ,
ସେ ସ୍ୱରରେ ମୁହିଁ ଜାଗ୍ରତ ହେବି
ଶୁଣିବାକୁ ଦିଅ କାନ ।
ଅନନ୍ତ ପ୍ରାଣ ମୃତ୍ୟୁରେ ଢ଼ଙ୍କା ମୋର
ସେଇ ପ୍ରାଣେ ମନ ମାତୁ ମୋର ବାରବାର ।
ନଭୁଲେ କେବେ ମୁଁ ତାହା
ପ୍ରାର୍ଥନା ମୋର ଏହା ।

ଚିତ୍ତ ବୀଣାର ତାରେ ମୂର୍ଚ୍ଛିତ
ସେ ମହାଝଡ଼ର ତାନ,
ସପ୍ତସିନ୍ଧୁ ଦଶ ଦିଗନ୍ତ
ଝଙ୍କାରେ ତା'ର ଗାନ ।
ଯେପରି ପାରିବି ସହି,
ଅତି ଆନନ୍ଦେ ମୁହିଁ ।

ସୁଖ ସମ୍ଭୋଗୁ ବଞ୍ଚିତ କରି, ନିଅ ସେ ମହାନ -
ଶାନ୍ତ ଗଭୀର ପଥେ,
ଅଶାନ୍ତି ଭରା ଅନ୍ତର ଯହିଁ
ମିଶିବ ଶାନ୍ତି-ସ୍ରୋତେ ।
ବକ୍ଷେ ତୁମର ବାଜୁଛି ବଂଶୀ ଗାନ
ଚିତ୍ତ ବୀଣାରେ ମୂର୍ଚ୍ଛିତ ତାର ତାନ ।।



## ୭୫

ଜୀବନ ମୋର ଦିଅ ହେ ଧୋଇ
କରୁଣା ବାରିଧାରେ,
ପାରିବି ହୋଇ, ଯୋଗ୍ୟ ମୁହିଁ
ତବ, ଚରଣ ଛୁଇଁ ବାରେ ।
ପ୍ରଭୁ !
ଅରପିବାକୁ ପୂଜାର ଡ଼ାଲା
ଉଠଇ ଭରି କାଳିମା କଳା
ପାରୁନି ମୁହିଁ ଅରପି ପ୍ରାଣ -
ତୁମରି ପଦତଳେ,
ଜୀବନ ମୋର ଦିଅ ହେ ! ଧୋଇ
କରୁଣା ବାରି ଧାରେ ।

ଏ ଯାଏ ମୋର
ନଥିଲା କିଛି ବ୍ୟଥା,
ଅଙ୍ଗେ ମଖା କେତେ ଯେ ମଳିନତା ।
ତୁମର ସେଇ ଶୁଭ୍ର କୋଳପରେ
ଶୋଇବ ବୋଲି -
ହୃଦୟ ମୋର କାନ୍ଦେ ବିକଳରେ ।
ଦିଅନା ଆଉ ଗଡ଼ାଇ ଧୂଳି ଧାରେ
ଜୀବନ ମମ ଦିଅ ହେ ଧୋଇ
କରୁଣା ବାରିଧାରେ ।।



# ୭୬

ଯେତେବେଳେ ସଭା ସାଙ୍ଗ ହୋଇବ
ଗାଇବିକି ଶେଷ ଗୀତଟି ମୁହିଁ,
ତୁମ ଶ୍ରୀମୁଖରେ ଦୃଷ୍ଟି ପଡ଼ିଲେ
ସୁରହରା ହୋଇ ରହିବି ଚାହିଁ ।
ଏ ଯାଏ ଗାଇନି ଯେଉଁ ଗୀତଟିକୁ
ସେ ରାଗିଣୀ କ'ଣ ଉଠିବ ଭରି,
ପ୍ରଣୟ ବେଦନା ସନ୍ଧ୍ୟା ଗଗନ
ବୁକୁରେ ଉଚ୍ଛୁଳି ଯିବକି ଝରି !

ଏତେ ଦିନ ଯାଏ ସାଧିଛି ଯେ ସୁର
ଦିନ ରାତି ଧରି ମୁଁ ଏକ ଲୟେ,
ସଉଭାଗ୍ୟ ବଳେ ସେ ସୁର ସାଧନା
ଏ ଜୀବନେ ଯଦି ସାଙ୍ଗ ହୁଏ ।
ମାନସ ବନର ପଦ୍ମ ସମାନ
ଏ ଜୀବନ ଭରା ସକଳବାଣୀ
ଭସାଇବି ଶେଷ ସାଗର ସୁଅରେ
ବିଶ୍ୱ ସଙ୍ଗୀତେ ମିଶାଇ ପୁଣି ।
ଗାଇବିକି ଶେଷ ଗୀତଟି ମୁହିଁ
ତୁମ ଶ୍ରୀମୁଖରେ ଦୃଷ୍ଟି ପଡ଼ିଲେ
ସୁରହରା ହୋଇ ରହିବି ଚାହିଁ ।



# ୭୭

ଚିର ଜୀବନର ବେଦନା ହେ ମୋର
        ଚିର ଜୀବନର ସାଧନା !
ଅଗ୍ନି ତୁମର ପ୍ରଜ୍ଜ୍ୱଳି ଉଠୁ ପରାଣେ
ଦୁର୍ବଳ ଭାବି, କୃପାକର ନାହିଁ ଏଦୀନେ ।
ଯେତେ ତାପ ଦିଅ ଏ ଜୀବନେ -
        ସବୁ ସହିବି,
ସକଳ ବାସନା ସେ ତାପରେ
        ସଖା  ଦହିବି ।
ଅମୋଘ ଯେ ଡ଼ାକ,
        ସେ ଡ଼ାକରେ ଡ଼ାକ, ଏଥର
        ବିଳମ୍ବ ଆଉ ନକର ।
ବକ୍ଷେ ଜଡ଼ାଇ ବନ୍ଧନ ଅଛି ଯା'କିଛି
ଛିଡ଼ିଯାଇ ତାହା ରହିଯାଉ ପଛେ ମୁରୁଛି ।

ଗରଜି ଗରଜି ଶଙ୍ଖ ତୁମର
ବାଜି ବାଜି ଉଠୁ ଏଥର ଏଥର,
ଗରବ ତୁଟିବ, ନିଦ୍ରା ଛୁଟିବ
ତୁଟିଯିବ ମାୟା ସକଳ ।
        ଜାଗିବ ତୀବ୍ର ଚେତନା,
ଚିର ଜୀବନର ବେଦନା ହେ ମୋର
        ଚିର ଜୀବନର ସାଧନା ।।



ମୂଳଗୀତାଞ୍ଜଳିର '୭୮' କବିତାଟି ପ୍ରଥମ ପଲ୍ଲବର '୨' କବିତା

# ୭୯

ମୋ ସକଳ ପ୍ରେମ ଛୁଟିଯାଉ ପ୍ରଭୁ !
ତୁମକୁ ପାଇବା ପାଇଁ,
ମୋ ସକଳ ଆଶା ଲୋଟିଯାଉ ଆହେ
ତୁମରି ଶ୍ରବଣ ଭୂଇଁ ।
ଚିତ୍ତ ମୋ'ର ଥାଉ ଯେଉଁଠାରେ ଅବା
ତୁମରି ଡ଼ାକରେ ଜାଗ୍ରତ ହେଉ ସଦା ।
ଟାଣି ଦେଲେ ବାରେ ପ୍ରଭୁ ହେ ଟାଆଣ କରି,
ତୁଟି ଯିବ ସବୁ ବନ୍ଧନ ମୋର
ବାଧା ଯିବ ଅପସରି ।
ବାହାର ଏ'ମୋର ଭିକ୍ଷା ଥାଳିଟି
ନିଃଶେଷ ହେଉ ପ୍ରଭୁ !
ଅନ୍ତର ମୋର ଗୋପନରେ ଭରୁ
ତୁମରି ଦାନରେ ସବୁ ।
ତୁମେ ମୋ' ବନ୍ଧୁ, ତୁମେ ଅନ୍ତରତମ !
ଏ'ଜୀବନେ ଯାହା ଅଟେ ପ୍ରଭୁ ଅନୁପମ,
ସଙ୍ଗୀତେ ମୋର ଆଜି
ସେସବୁ ଉଠୁହେ ବାଜି ।
ଆହେ ଅନ୍ତରତମ !
ତୁମେ, ଅନୁପମ ଅନୁପମ ।।



---

ମୂଳଗୀତାଞ୍ଜଳିର '୮୦' କବିତାଟି ପ୍ରଥମ ପଲ୍ଲବର '୩୩' କବିତା

# ୮୧

ସେମାନଙ୍କୁ ମୁଁ ଚିହ୍ନି ଅଛି
ଛଦ୍ମବେଶୀ ଦଳ,
ସେମାନେ ମୋତେ ଚିହ୍ନିଛନ୍ତି
ମୁଁ ଅଟେ ହୀନବଳ ।
ତାଙ୍କର କିଛି ଗୋପନ ଆଉ ନାହିଁ
ଲଜ୍ଜା ଅବା ସରମେ ସିଏ
ଯାଆନ୍ତି ନାହିଁ ନଇଁ ।

ବାଟରେ ଲୁଚି ସେମାନେ ସବୁ ଆସି
ତୁମ ନାଁରେ ମାସୁଲ ନେଇ-
ପଳାଇଯାନ୍ତି ଖସି ।
ଘାଟକୁ ଫେରେ ହୋଇବି ବୋଲି ପାରି
କଉଡ଼ି ନାହିଁ ଦେଖେ ମୋ ହାତ ଖାଲି ।
ସେମାନେ ତୁମ କାମର ବାହାନାରେ
ସର୍ବନାଶ କରନ୍ତି ବାରେ ବାରେ ।
ଧନ ଓ ପ୍ରାଣମୋର -
ନିଅନ୍ତି ହରି, କରନ୍ତି ସବୁ ଜୁର ।
ମୁଣ୍ଡ ଟେକି ପଥକୁ ରୋଧି -
ସେମାନେ ଦଳବଳେ
ବୁଲନ୍ତି ଛିଡ଼ା ଅବାଧେ ଦରପରେ ।
ପ୍ରଭୁ ! କିପରି ହେବି ପାରି !
ସେମାନେ ସବୁ ନିଅନ୍ତି ଅପହରି ।



# ୮୨

ଏଇ, ଜ୍ୟୋତ୍ସ୍ନାରାତେ ଜାଗଇ ମୋର ପ୍ରାଣ
ପାଖରେ ଯଦି ମିଳିବ ପ୍ରଭୁ !
ଟିକିଏ ମୋତେ ଥାନ ?
ପାରିବି ଦେଖି ଅପୂର୍ବ ସେ
ତୁମର ମୁଖ ଶୋଭା
ଉତ୍ସୁକରେ ରହିବି ଚାହିଁ
ନୟନ ମନ ଲୋଭା ।
ବାରେ ବାରେ ଚରଣ ଛୁଇଁଛୁଇଁ
ଅଶ୍ରୁଭରା ସଙ୍ଗୀତ ମୋ'
ଅରପି ପଦେ ସାଇଁ ।

ସାହସ କରି ତୁମର ପଦତଳେ
ନିଜକୁ ମୁହିଁ ଅରପି ନାହିଁ ଥରେ ।
ପଡ଼ିଛି ମୁହଁ ମାଡ଼ି,
ମୋ ଦାନ କାଳେ ଫେରାଇ ଦେବ ବୋଲି ।
ପ୍ରଭୁ ହେ ! ତୁମେ ପାଖକୁ ଆସି
ମୋ ହାତଧରି, ଉଠାଇ ଦେବ ଯେବେ
ଉଠିବି ତଳୁ, ତେବେ -
ନିମିଷକରେ ହୋଇବ ଅବସାନ,
ଅସୀମ ଦରିଦ୍ରତା ହେ ମୋର,
ଅମାପ ଅଭିମାନ ।
ପ୍ରଭୁ ! ଅମାପ ଅଭିମାନ ।।



ମୂଳଗୀତାଞ୍ଜଳିର '୮୩' କବିତାଟି ପ୍ରଥମ ପଲ୍ଲବର '୪୨' କବିତା

## ୮୪

ମୋର, ଏକଲା ଘରର ଆଡୁଆଳ ଭାଙ୍ଗି
ବିଶାଳ ଭବେ,
ପ୍ରାଣର ରଥରେ ବାହାର ମୁଁ ହୋଇ
ପାରିବି କେବେ !
ସବୁରି ସାଥେ ପ୍ରବଳ ପ୍ରେମେ
ବୁଲିବି ଧାଇଁ ସକଳ କାମେ,
ହାଟରେ ଦିନେ ତୁମରି ସାଥେ
ମିଳନ ହେବ
ବିଶାଳ ଭବେ ।
ପ୍ରାଣର ରଥରେ ବାହାର ମୁଁ ହୋଇ
ପାରିବି କେବେ ।

ନିଖିଳ ଆଶା ଆକାଙ୍‌କ୍ଷାମୟ
ଦୁଃଖେ ସୁଖେ,
କମ୍ପିତ ତା'ର ତରଙ୍ଗାଘାତ
ବହିବି ବୁକେ ।
ଭଲ ମନ୍ଦର ଆଘାତ ଲାଗି
ତୁମରି ବୁକୁରେ ଉଠିବି ଜାଗି
ଶୁଣିବି ବାଣୀ ବିଶ୍ୱଜନର
ସେ କଳରବେ
ବିଶାଳ ଭବେ ।
ପ୍ରାଣର ରଥରେ ବାହାର ମୁଁ ହୋଇ
ପାରିବି କେବେ ।।



# ୮୫

ଏକଲା ମୁହିଁ ଫେରିବି ନାହିଁ
ଏପରି କରି,
ମନର କୋଣ ଅନୁକୋଣ ମୋ
ମୋହରେ ଭରି ।
ଏକଲା ବାହୁର ବନ୍ଧନେ ପ୍ରଭୁ !
ନେବାକୁ ବାନ୍ଧି,
ହାତ ବଢ଼ାଇଲି ଛୋଟ ଭାବି ପରା
ନିଜ ଡ଼ୋରେ ନିଜେ
ହୋଇଲି ଛନ୍ଦି ।

ତୁମକୁ ପ୍ରଭୁ ! ପାଇବି ଯେବେ
ନିଖିଳ ଧରା ଶେଷେ,
ହୃଦୟ ମୋର ପାଇବ ତେବେ
ତା'ର ହୃଦୟରାଜେ ।
ଏଇ ଚିତ୍ତ ମୋର
ଅଟଇ ବୃନ୍ତ ଏକ,
ଦେଖାଅ ପ୍ରଭୁ ! ବିଶ୍ୱ କମଳ
ହୋଇଛି ପ୍ରସ୍ଫୁଟିତ ।
ଦେଖାଅ ଆହେ ! ଆଜ
ହେ ମୋର ହୃଦୟରାଜ ।



## ୮୭

ଜାଗ୍ରତ ଯଦି କରିଲ ମୋତେ, ନାଥ !
ଯାଅନା ଫେରି, ଫେରନା କରି -
          କରୁଣ ଦୃଷ୍ଟିପାତ ।

ନିବିଡ଼ ବନ ଶାଖାର ପରେ
ଆଷାଢ଼ ମେଘ ବୃଷ୍ଟିଝରେ,
ବାଦଲ ଭରା ଅଳସ ଭରି
ଘୁମାଇ ଅଛି ରାତି,
ନଫେର ତୁମେ ନଫେର ତୁମେ
ଆହେ କରୁଣା ପତି !

ବିରାମ ହୀନ ବିଜୁଳି ଘାତେ
          ନିଦ୍ରା ହରା ପ୍ରାଣ,
ବରଷା ଜଳ ଧାରାର ସାଥେ
          ଗାଇବ ଚାହେଁ ଗାନ ।
ହୃଦୟ ମୋର ନୟନ ଜଳେ
ବାହାରି ଆସେ ତିମିର ତଳେ,
ଆକାଶ ଖୋଜେ ବ୍ୟାକୁଳ ମନେ
          ବଢ଼ାଇ ଦୁଇ ହାତ,
ଫେରନା ତୁମେ, ଫେରନା ତୁମେ ନାଥ ।



---

ମୂଳଗୀତାଞ୍ଜଳିର '୮୭' ଓ '୮୮' କବିତା ପ୍ରଥମ ପଲ୍ଲବର '୬' ଓ '୩୮' କବିତା

## ୮୯

ମୋର ଏ ପ୍ରେମ ନୁହଇ ଭୀରୁ
ନୁହଇ ହୀନ ବଳ
କାହିଁକି ତେବେ ବୁହାଇ ଦେବି
ବ୍ୟାକୁଳେ ଅଶ୍ରୁଜଳ ।
ମନ୍ଦ ମଧୁର ଏ ସୁଖ ଶୋଭା
ନିଦ୍ରା ବିଭୋର କରଇ କିବା
ତୁମରି ସାଥେ ଉଠିବିଜାଗି,
ଆନନ୍ଦରେ ପାଗଳ,
ମୋର ଏ ପ୍ରେମ ନୁହଇ ଭୀରୁ
ନୁହଇ ହୀନବଳ ।

ଭୀଷଣ ସାଜେ ନାଚହେ ଯେବେ
ତୀବ୍ର ତାଳର ଆଘାତ ବାଜେ,
ପଳାଏ ଭୟେ ପଳାଏ ଲାଜେ
ସନ୍ଦେହ ବିହ୍ଵଳ,
ଲାଗେନା କିଛି ଭଲ ।
ପ୍ରଚଣ୍ଡ ମନୋହର ସେ ରୂପ ଶୋଭା
ପ୍ରେମରେ ସଖା ! ବରଣ କରେ
ସେ ରୂପ ମନଲୋଭା,
ନିକ୍ଷେପେ ମୁଁ ଅତଳ ରସାତଳ
କ୍ଷୁଦ୍ର ସେଇ ଆଶାର ସ୍ଵର୍ଗ ମୋର ।।



# ୯୦

ମୋ, ଜୀବନ ବୀଣାକୁ ଝଙ୍କୃତ କର
ଆଉରି କଠିନ ସ୍ୱରେ ·
ଏ' ତାରଟି ତା'ର ଦୁର୍ବଳ ନୁହେଁ
ପ୍ରତିଘାତ ସହିବାରେ ।
ଯେ ରାଗ ଜଗାଅ ଏ' ପରାଣେ ମମ
ନ ତୋଳଇ ତାହା ସେ ତାନ ଚରମ
ପ୍ରମୂର୍ତ୍ତ କର, ମୂର୍ଚ୍ଛନା ତୋଳି
ସେଇ,
କଠିନ କଠୋର ଗାନ ।
ପ୍ରଭୁ !
କଠିନ କଠୋର ଗାନ ।

ଜୀବନକୁ ମୋର ବ୍ୟର୍ଥ କରନା
କୋମଳ କରୁଣା ରାଗେ
ମେଦୁର ମଧୁର ସ୍ୱର ଝଙ୍କାର
ଖେଳାଇ ଜୀବନ ଭାଗେ ।
ଜଳି ଉଠୁ ଆଜି ସକଳ ହୁତାଶ
ଗର୍ଜି ଉଠୁ ହେ ! ସକଳ ବତାସ,
ଜାଗି ଉଠୁ ଆଜି ସକଳ ଆକାଶ
ବିସ୍ତାର କରି ପୂର୍ଣ୍ଣତା ମୋର ପ୍ରାଣେ ।
ଜୀବନକୁ ମୋର ବ୍ୟର୍ଥ କରନା
କୋମଳ କରୁଣା ଗାନେ ।

●

# ୯୧

କରିଛ ଭଲ ନିଠୁର ତୁମେ
କରିଛ ଏହା ଭଲ,
ଏପରି କରି ହୃଦୟେ ମମ
ତୀବ୍ର ଦାହ ଜାଳ ।
ମୋ ଧୂପ ଯଦି ଜଳିବ ନାହିଁ
ଗନ୍ଧ ତା'ର ଖେଳିବ ନାହିଁ,
ଅଜଳା ଯଦି ରହିବ ଦୀପ ମୋର-
କିପରି ଦେବଂ ଆଲୋକ ଟିକେ ତା'ର ?

ଯେବେ ମୋ ଥାଏ ଚିତ୍ତ ଅଚେତନ
ଜଗାଏ ମୋତେ ସ୍ପର୍ଶାଘାତ ତୁମ ।
ପ୍ରଭୁ ହେ ! ବାରବାର,
ଅଟଇ ତାହା ମୋପାଇଁ ପୁରସ୍କାର ।

ଲଜ୍ଜା ଭରେ, ମୋହାନ୍ଧକାରେ ମୁହିଁ
ଦର୍ଶନ ମୁଁ ତୁମକୁ କରିନାହିଁ ।
ବଜ୍ର ଅଗ୍ନି ଜଳାଇ ଦେଇ ପ୍ରଭୁ
ଜଳାଇ ଦିଅ କାଳିମା ମୋର ସବୁ ।
କରିଛ ଭଲ ନିଠୁର ତୁମେ
କରିଛ ଏହା ଭଲ,
ଏପରି କରି ହୃଦୟେ ମମ
ତୀବ୍ର ଦାହ ଜାଳ ।।



'୯୨' କବିତାଟି ପ୍ରଥମ ପଲ୍ଲବର '୭୬' କବିତା

# ୯୩

ଯେ କାମ ତୁମେ କରୁଛ, ମୋତେ -
ସେ କାମେ କ'ଣ ଲଗାଇବନି
କାମର ଦିନେ, ମୋତେ କି ତୁମେ
ତୁମରି ହାତେ ଜଗାଇବନି ?

ଉତ୍‌ଥାନ ପତନ ଭଲବା ମନ୍ଦରେ
ବିଶ୍ୱର ଏଇ ଭଙ୍ଗା ଗଢ଼ାରେ-
ଚାହେଁ ତୁମ ପାଶେ ଥିବି ନିରନ୍ତର
ଚିହ୍ନିବାକୁ, ମମ ପ୍ରଭୁର ଅନ୍ତର !
ତୁମେ କ'ଣ ମୋତେ ଜଗାଇବନି ।
ତୁମେ କାମେ କ'ଣ ଲଗାଇବନି ?
ଭାବିଥିଲି ସଖା ବିଜନ ଛାୟାରେ
ନାହିଁ ଯାତାୟତ ଯେ ଅନ୍ଧାର ପୁରେ,
ସନ୍ଧ୍ୟାରେ ହେବ ତୁମ ସାଥେ ମୋର
ଦେଖା ଶୁଣା ପରିଚୟ,
ଆହେ ଅନ୍ତର ମୟ ।
ଏ କାମରେ କ'ଣ ଲଗାଇବନି
ତୁମ ହାତେ କ'ଣ ଜଗାଇବନି ?
ଦେଖା ମୋର ସେଇ ଅନ୍ଧାରେ ଏକା ଏକା
ଲାଗିବ ଯେପରି ଅଭୁଲା ସ୍ୱପ୍ନ ଦେଖା ।
ଏ ହାଟ ମଝିରେ ଡ଼ାକୁଛ ପରାଣ ପତି
ବିକା କିଣା ଯହିଁ ଚାଲୁଅଛି ଦିନରାତି !
ଅନ୍ଧାର ପଥେ ଏକା ଏକା କଣ ଆସିବ ନାହିଁ ?
ଦେଖାଟିକେ ମୋତେ ମିଳିବ ନାହିଁ ?



# ୯୪

ଯେଉଁଠି ତୁମେ ବିହାରକର
 ବିଶ୍ୱ ସାଥେ ନିଜକୁ ଯୋଡ଼ି,
ସେଇଠି ମୁହିଁ ସଂଯୋଗିତ
 ତୁମରି ସାଥେ, ତୁମକୁ ଲୋଡ଼ି ।
ନୁହଇ ସେଇ ବିଜନ ବନେ
ନୁହଇ୍ ମୋର ନିଜର ମନେ,
ସବୁରି ସାଥେ ଯେଉଁଠି ତୁମେ ପ୍ରିୟ୍
ସେଇଠି ମଧ୍ୟ ତୁମେ ମୋ ପୂଜନୀୟ୍ ।

ସବୁରି ପାଇଁ ଯେଉଁଠି ତୁମେ
 ପ୍ରସାର ବାହୁ ଚାଳି,
ସେଇଠି ମୁହିଁ ତୁମରି ପାଇଁ ବାଢ଼ିବି -
 ମୋର ପ୍ରେମର ପୂଜା ଥାଳି ।
ଗୋପନ ପ୍ରେମ ରହେନା କେବେ ଲୁଚି,
 ବିଛୁରି ତାହା ଆଲୋକେ ଯାଏ ହଜି ।
ତୁମେ ତ ପ୍ରିୟ୍ ସମସ୍ତଙ୍କର
 ଅଟ ଆନନ୍ଦ ଧନ,
ମୋ'ରି ମଧ୍ୟ ଅଟହେ ତୁମେ
 ଆନନ୍ଦର ଧାମ ।



## ୯୫

ଡ଼ାକ, ଡ଼ାକ ଡ଼ାକ ହେ ମୋତେଥରେ
ତୁମର ସେଇ ଶୀତଳ ସ୍ନିଗ୍ଧ ପବିତ୍ର ଅନ୍ଧକାରେ ।
ତୁଚ୍ଛ ଦିନର ସକଳ କ୍ଳାନ୍ତି ଗ୍ଲାନି,
ଜୀବନକୁ ମୋର ନିଅଇ ଧୂଳିରେ ଟାଣି ।
ସୃଷ୍ଟିକରେ ମୋର,
ମନ ବଚନରେ, ବିକାର ନିରନ୍ତର ।

ମୁକ୍ତ କର ହେ ! ମୁକ୍ତକର ଥରେ
ତୁମର ନିବିଡ଼ ନିରବ ଉଦାର
ଅନନ୍ତ ଅନ୍ଧକାରେ ।
ନିରବ ରାତିରେ କରି ବାକ୍‌ହରା
ମିଶାଅ ବାହାର, ବାହାରରେ ପରା
ଦେଖା ଦିଅ ମୋତେ -
ଅଖଣ୍ଡ ରୂପେ ତୁମ,
ଆହେ ମୋର ପ୍ରିୟ୍
ଆହେ ଅନ୍ତରତମ !
ଡ଼ାକ ଡ଼ାକ ମୋତେ ଥରେ,
ତୁମର ନିବିଡ଼ ପବିତ୍ର ଅନ୍ଧକାରେ ।



## ୯୬

ଏ ବିଶ୍ୱ ଭୁବନେ
ଜୀବନ ତୁମର ଲୁଟି ହୁଏ ପ୍ରଭୁ ! ଯେଠାରେ,
ଚିତ୍ତ ମୋର ଯିବ କେଉଁପରି ସେଠାରେ ?
ସୂର୍ଯ୍ୟ ତାରକା ଭରୁଛନ୍ତି ସୁନା କଳସୀ
ତୋଳି ନେଉଛନ୍ତି ଗଗନରୁ ତୁମ -
ଆଲୋକର ଧାରା, ପରଶି ।
ଅନନ୍ତ ପ୍ରାଣ ବିଛୁରିତ ଶୂନ୍ୟ ବୁକୁରେ
ଚିତ୍ତ ମୋର ଯିବ କେଉଁପରି ସେଠାରେ ?

ଯେଉଁଠାରେ ତୁମେ ବସି ଅଛ ପ୍ରଭୁ !
'ମହାଦାନୀ ବୀର' ଆସନେ
ଚିତ୍ତ ମୋର ଯିବ ତହିଁ ଖୋଜେ,
କିପରି ସେ ଯିବ ନଜାଣେ ।
ନିତ୍ୟ ନୂତନ ରସ ଯହିଁ ଢ଼ାଳି
ନିଜକୁ ଦେଇଛ ନିଜେ ଯହିଁ ମେଲି,
ସେଠିକି ଯିବାକୁ ଏ ଜୀବନେ ମୋତେ
ଆସିବକି ନାହିଁ ଡ଼ାକରା ?
ଚିତ୍ତ ମୋ'ର ଖୋଲିବ କିପରି
ତହିଁ ପ୍ରଭୁ! ତା'ର ପସରା,
ଆସିବକି ନାହିଁ ଡ଼ାକରା ।



# ୯୭

ଫୁଲପରି ତୁମେ କେତେ ଯେ
ଫୁଟାଅ ଗାନ
ହେ ପରାଣ ନାଥ ! ଏଇତ
ତୁମର ଦାନ ।
ସେଇ ଫୁଲ ଦେଖି ଆନନ୍ଦେ
ଉଠେ ଭାସି
ପ୍ରଭୁ ! ନିଜ ଫୁଲ ରୂପେ
ଉପହାର ଦିଏ ଆସି ।
ନିଜ ହାତେ ତୁମେ ତୋଳିନିଅ
ହସି ହସି ।
ଦୟା କରି ମୋର ରଖ ତୁମେ ଅଭିମାନ
ହେ ପରାଣ ନାଥ ! ଏଇତ ତୁମର ଦାନ ।

ଏହା ପରେ ଯଦି ପୂଜା ଲଗନର ଶେଷେ
ଏଇଗାନ ଝରି ଧରାର ଧୂଳିରେ ମିଶେ ।
ତେବେ କ୍ଷତି ନାହିଁ, ତବ କରତଳ ପୁଟେ
ଅଜସ୍ର ଧନ କେତେ ଲୁଟେ କେତେ ତୁଟେ,
ମୋ ଜୀବନେ ତାହା କ୍ଷଣକାଳ ପାଇଁ ଫୁଟେ ।
ଚିର କାଳ ପାଇଁ
ସାର୍ଥକ କରି ପ୍ରାଣ,
ଫୁଲ ପରି କେତେ
ତୁମେ ଯେ ଫୁଟାଅ ଗାନ ।

●

# ୯୮

ତୁମରି ଦିଗେ ଦୃଷ୍ଟି ରହୁ ଧ୍ୟାନେ
ଏଇ ଇଚ୍ଛାଟି, ସଫଳ କର ପ୍ରାଣେ ।
କେବଳ ମୁହିଁ କେବଳ ଥିବି ଚାହିଁ,
ମନଟି ମୋର ରଖିବି ତୋଳି ତହିଁ,
ସକଳ ବ୍ୟଥା ସକଳ ଆକାଙ୍‌କ୍ଷାରେ
ସକଳ ଦିନ ସକଳ କାମ ଭାରେ ।
ତୁମରି ଦିଗେ ଦୃଷ୍ଟି ରହୁ ମୋର
ଏଇ ଇଚ୍ଛାଟି ସଫଳ ପ୍ରଭୁ କର ।

ନାନା ଇଚ୍ଛା ଧାଉଁଛି ନାନା ଦିଗେ
ଏଇ, ଗୋଟିଏ ଇଚ୍ଛା ପୂରଣ କର ମାଗେ ।
ଏଇ ଇଚ୍ଛାଟି ରାତିର ପରେ ରାତି
ଜାଗେ ଯେଇ ବେଦନା ତଳେ ମାତି,
ଏଇ ଇଚ୍ଛାଟି ସଫଳ ପ୍ରଭୁ କର,
ତୁମରି ଦିଗେ ଦୃଷ୍ଟି ରହୁ ମୋର ।

ଦିନକ ପରେ ଦିନକୁ ତୁମେ
ଗୁନ୍ଥିଚ ଯେଉଁପରି -
ଗୋଟିଏ ସୂତ୍ରେ, ଆନନ୍ଦ ଗାନେ ଭରି,
ତୁମରି ଦିଗେ ଦୃଷ୍ଟି ରହୁ ଧ୍ୟାନେ
ଏଇ ଇଚ୍ଛାଟି ସଫଳକର ପ୍ରାଣେ ।।



## ୯୯

ଆସିଛି ପୁଣି ଆଷାଢ଼, ଆକାଶ ଛାଇ
ଆସେ ବୃଷ୍ଟିର ସୁବାସ ବତାସ ବାହି ।
ଏଇ ପୁରାତନ ହୃଦୟ ମୋର ଆଜି
ଅନନ୍ଦେ ଦୋଳି ଉଠିଅଛି ପୁଣିବାଜି ।
ନବ ମେଘମାଳା ଘନିମାକୁ ଅଛି ଚାହିଁ
ଆସିଅଛି ପୂରି ଆଷାଢ଼
ଆକାଶ ଛାଇ ।

ରହି ରହି ସେଇ ବିପୁଳ ମାଟିର ବୁକେ
ନବ ତୃଣ ଦଳେ ବାଦଲର ଛାଇ ଲୋଟେ ।
ଆସିଛି, ଆସିଛି,
ଏଇ କଥା କହେ ପ୍ରାଣ
ଆସିଛି..ଆସିଛି
ଉଠି ଅଛି ଏଇ ଗାନ ।
ନୟନେ ଆସିଛି
ହୃଦୟେ ଆସିଛି ଧାଇଁ,
ଆସି ଅଛି ପୁଣି
ଆଷାଢ଼ ଆକାଶ ଛାଇ ।।



# ୧୦୦

ଆଜି, ବରଷାର ରୂପ ଦେଖୁଛି ସବୁରି ସାଥେ
ଚାଲିଛି ଗରଜି, ଚାଲିଛି ବାଦଲ ରଥେ ।
ହୃଦୟେ ତା'ର ନାଚୁଛି ପ୍ରଳୟ ଶିଖା
ଧାଇଁ ଧାଇଁ ଲୋପ କରିଦିଏ ସୀମାରେଖା ।
କେଉଁ ତାଡ଼ନାରେ ମେଘର ସହିତ ମେଘ
ବକ୍ଷେ ବକ୍ଷ ମିଳାଇ ତୋଳଇ
ଗଭୀର ବଜ୍ର ନାଦ,
ବରଷାର ରୂପ ଦେଖୁଛି ସବୁରି ସାଥେ ।
ଚାଲିଛି ବାଦଲ ରଥେ ।

ପୁଞ୍ଜ ପୁଞ୍ଜ ମେଘ ଦୂର ଦିଗ ଛୁଇଁ
ଚଳେ ଦଳ ଦଳ, କାହିଁ ଯାଏ ଜାଣେ ନାହିଁ
ଜାଣେ ନାହିଁ ସିଏ କେଉଁ ମହାଦ୍ରି ତଳେ
ଗଭୀର ଶ୍ରାବଣେ ଗଳି ପଡ଼ିବ ସେ ଜଳେ ।
ଜାଣେ ନାହିଁ ତା'ର ଘନ ଘୋର ସମାରୋହେ
କେଉଁ ସେ ଭୀଷଣ ଜୀବନ ମରଣ ମୋହେ ।
ଆକାଶେ ବରଷା ଛୁଟେ
ସବୁରି ନୟନେ ଲୋଟେ ।

ଈଶାନ କୋଣରେ ଏଇ ଯେ ଝଡ଼ର ବାଣୀ
ଗୁରୁ ଗୁରୁ ରବେ କି କହୁଛି କାନେ ପୁଣି ।

ଦିଗନ୍ତରାଳେ ରହିଅଛି କେଉଁ
ଭବିତବ୍ୟତା ଲୁଚି,
ସ୍ତବ୍ଧ ତିମିରେ ଭାଷାହୀନ ବ୍ୟଥା ସୂଚି ।
କଳ୍ପନା କଳା ନିବିଡ଼ ସେ ଛାୟା ତଳେ
କେଉଁ, ଆସନ୍ନ କାମେ ଘନାଇ ଉଠିଛି ସତେ
ବରଷାର ରୂପ ଦେଖୁଛି ସବୁରି ସାଥେ ।।



## ୧୦୨

ଏ ଜୀବନେ ପ୍ରଭୁ !
ଏତିକି ବାସନା ମୋର,
ବାଜି ଉଠୁ ତୁମ
ମହାସଙ୍ଗୀତ ସ୍ୱର.. ।
ତୁମରି ଆକାଶ ଉଦାର ଆଲୋକଧାରା -
ଲେଉଟି ନଯାଉ, ଦେଖି ମୋ କୁଟୀର
କ୍ଷୁଦ୍ର ଦୁଆର ପରା ।
ଛଅ ଋତୁ ଏଥି ଆସି,
ଯାଆନ୍ତୁ ଆନନ୍ଦେ
ନାଚି ନାଚି ହସି ହସି ।

ତୁମରି ଆନନ୍ଦ ଧାରା,
ବାଧା ବନ୍ଧନ ଆବରଣ ଭେଦି -
ଅଙ୍ଗେ ଅଙ୍ଗେ ଶିହରିତ ହେଉ ସାରା ।

---

'୧୦୧' କବିତାଟି ପ୍ରଥମ ପଲ୍ଲବର '୬୫' କବିତା

ତୁମ ଆନନ୍ଦ, ପରମ ଦୁଃଖେ ମମ
ପ୍ରଜ୍ୱଳିଉଠୁ ପୁଣ୍ୟ ଆଲୋକ ସମ ।
ତୁମ୍ ଆନନ୍ଦ ଦୀନତା ଚୂର୍ଣ୍ଣ କରି
ସନ୍ତାପ ସହିହରି,
ଫୁଟିଉଠୁ ସଖା !
ସକଳ କର୍ମେ ଭରି ।।



## ୧୦୪

ତୁମ ଆଡ଼େ ପ୍ରଭୁ ! ରହିଛି ଚାହିଁ
ସମସ୍ତଙ୍କ ସାଥେ ଥାନଟିକେ ସଖା
ପାଇବା ପାଇଁ ।
ସବୁଠାରୁ ତଳେ ଏ ଧୂଳି ମାଟିରେ
ବସିବା ଲାଗି,
ମୂଲ୍ୟ ଦେବାକୁ ପଡ଼େ ନାହିଁ ଯହିଁ
କେ ନୁହେ ଭାଗୀ ।
ନାହିଁ ଭେଦ ଯହିଁ ମାନାପମାନ
ସେଇଠାରେ ପ୍ରଭୁ ! ଥାନଟିକେ ମାଗେ
ସବୁରି ମଝିରେ ଦିଅ ହେ ଥାନ ।

---

'୧୦୩' କବିତାଟି ପ୍ରଥମ ପଲ୍ଲବର '୩୦' କବିତା

ବହିରାବରଣ ନଥାଏ ଯହିଁ,
ଖୋଲାଖୋଲି ନିଜ ପରିଚୟ ଖାଲି
ଥାଏରେ ତହିଁ ।
ଯହିଁ ନାହିଁ କିଛି ଆପଣାର ଏକା
ସେ କହିବାକୁ,
ଏଇ ସତ୍ୟଟି ଢ଼ାଙ୍କେନି କେବେ
ତା'ମନଟିକୁ ।
ସେଇଠାରେ ମୋତେ କର ହେ ଛିଡ଼ା,
ଲଜ୍ଜାହୀନ ଏ ଦୀନତାକୁ ମୋର
ପରମ ଦାନରେ ଭରି ନେବି ତାର,
ଏ ଧୂଳି ମାଟିରେ, ସବୁରି ମଝିରେ
ଥାନଟିକେ ମୁହିଁ ମାଗୁଛି ପରା ।।



## ୧୦୬

ହେ ମୋର ଚିତ୍ତ ପୁଣ୍ୟ ତୀର୍ଥେ
ଜାଗରେ ଧୀରେ,
ଏଇ ଭାରତର ମହାମାନବର
ସାଗର ତୀରେ ।

ଦୁଇବାହୁ ଟେକି ଏଥି ଛିଡ଼ା ହୋଇ
ନର ଦେବତାଙ୍କୁ କରେ ମୁଁ ନମ
ଉଦାର ହୃଦୟେ ପରମାନନ୍ଦେ
କରୁ ବନ୍ଦନା ହୃଦୟ ମମ ।

'୧୦୫' କବିତାଟି ପ୍ରଥମ ପଲ୍ଲବର '୯' କବିତା

ଧ୍ୟାନ ଗମ୍ଭୀର ଏଇ ଯେ ଭୂଧର
ନଦୀ ଜପମାଳାଧୃତ ପ୍ରାନ୍ତର,
ଏଥି ଦେଖ ନିତି, ପବିତ୍ର ଏଇ ଧରିତ୍ରୀରେ
ଏଇ ଭାରତର, ମହା ମାନବର ସାଗର ତୀରେ ।

କେହି ଜାଣେ ନାହିଁ, କା'ର ଆହ୍ୱାନେ
କେତେ ମଣିଷର ଧାରା,
ଦୁର୍ବାର ସ୍ରୋତେ ଆସିଲେ କେଉଁଠୁ
କାହିଁ ଭାସିଗଲେ ପରା ।
କେତେ ଯେ ଆର୍ଯ୍ୟ, କେତେ ଅନାର୍ଯ୍ୟ
ଦ୍ରାବିଡ଼ ଶକ ଓ ଚୀନ,
କେତେ ଯେ ପଠାଣ ମୋଗଲ ଏଠାରେ
ଏକତ୍ର ହେଲେ ଲୀନ ।

ପଶ୍ଚିମ ଆଜି ଖୋଲିଅଛି ଦ୍ୱାର
ସେଇଠୁ ଆଣିବେ ସର୍ବେ ଉପହାର
ଦେବେ ଏବଂ ନେବେ ମିଶି ମିଶାଇବେ
ନଫେରିବେରେ,
ଏଇ ଭାରତର ମହାମାନବର ସାଗର ତୀରେ ।

ରଣଧାରା ବାହି ଜୟଗାନ ଗାଇ
ଉନ୍ମାଦ କଳରବେ,
ଭେଦି ମରୁ ପଥ ଗିରି ପର୍ବତ
ଯେତେ ଆସିଥିଲେ ସର୍ବେ ।
ସେମାନେ ସମସ୍ତେ
ମୋ ସାଥେ ଅଛନ୍ତି

କେ ନୁହେଁ ମୋଠାରୁ ଦୂର,
ମୋ'ରି ରକତେ ଝଙ୍କୃତ ହୁଏ
ବିଚିତ୍ର ତାଙ୍କ ସ୍ୱର ।
ହେ ରୁଦ୍ର ବୀଣା ବାଜହେ ବାଜ
ଘୃଣାରେ ଦୂରେ ଯେ ଅଛନ୍ତି ଆଜ,
ବନ୍ଧନ ଏଡ଼ି ଆସିବେ ସେମାନେ
ଛିଡ଼ାହେବେ ଆସି ଆମରି ମେଳେ ।
ଏଇ ଭାରତର ମହାମାନବର
ସାଗର ତୀରେ ।

ଅବିରାମ ମହା ଓଁକାର ଧ୍ୱନି
ବାଜିଥିଲା ଦିନେ ପୁଣି,
ହୃଦୟ ତନ୍ତ୍ରେ ଏକଇ ମନ୍ତ୍ରେ
ଉଠିଥିଲା ଅନୁରଣି ।
ତପ ବଳେ ସିଏ ଏକତା ଅନଳେ
ଅନେକେ ଆହୁତି ଢ଼ାଳି,
ବିଭେଦତା ଭୁଲି ଜାଗି ଉଠିଥିଲେ
ବିରାଟ ହୃଦୟ ତୋଳି ।
ସେଇ ସାଧନାର, ସେ ଆରାଧନାର,
ଯଜ୍ଞଶାଳାର ଖୋଲା ଆଜି ଦ୍ୱାର,
ସେଇଠେ ସରବେ ମିଳିତ ହୋଇବେ
ନମ୍ର ଆନତ ଶିରେ,
ଏଇ ଭାରତର ମହାମାନବର
ସାଗର ତୀରେ ।

ସେଇ ହୋମାନଳେ ଦେଖ ଆଜି ଜଳେ
ଦୁଃଖ ରକ୍ତ ଶିଖା,
ହେବ ତା' ସହିତ ମର୍ମେ ଦହିତ
ଅଛି ତା' ଭାଗ୍ୟେ ଲେଖା ।
ଏ'ଦୁଃଖ ବହନ କରଆରେ ମନ !
ଶୁଣରେ ଏକତା ସ୍ୱର,
ଯେତେ ଲଜ୍ଜା ଭୟ୍ କର ଆରେ ଜୟ୍
ଅପମାନ କର ଦୂର ।

ଦୁଃସହ ବ୍ୟଥା ହେଉ ଅବସାନ
ଜନ୍ମ ଲଭିବ କି ବିଶାଳ ପ୍ରାଣ,
ପାହିବ ରଜନୀ ଜାଗିଛି ଜନନୀ
ବିପୁଳ ନୀଡ଼େ,
ଏଇ ଭାରତର ମହାମାନବର
ସାଗର ତୀରେ ।

ଆସ ହେ ଆର୍ଯ୍ୟ, ଆସ ଅନାର୍ଯ୍ୟ
ହିନ୍ଦୁ ମୁସଲମାନ,
ଆସ ଆସ ଆଜ ତୁମେ ଇଂରେଜ
ଆସ ଆସ ଖ୍ରୀଷ୍ଟାନ ।
ଆସ ବ୍ରାହ୍ମଣ ଶୁଚି କରି ମନ
ଧର ହେ ସବୁରି କର,
ଆସହେ ପତିତ କର ଅପନୀତ
ସବୁ ଅପମାନ ଭାର,
ଜନନୀର, ଜନନୀର ।

ଶୁଭ ଅଭିଷେକ ଆଜି ହେବ ପରା
ମଙ୍ଗଳ ଘଟ ହୋଇନାହିଁ ଭରା,
ସବୁରି ପରଶେ ପବିତ୍ର ତୀର୍ଥନୀରେ
ଆଜି ଭାରତର ମହାମାନବର
ସାଗର ତୀରେ ।



## ୧୦୮

ହେ ମୋର ଦୁର୍ଭାଗ୍ୟ ଦେଶ
କରିଅଛ ଯାକୁ ଅପମାନ,
ହୋଇବ ଅପମାନିତ
ତାଙ୍କ ସାଥେ ହୋଇ ହେ ସମାନ ।
ମନୁଷ୍ୟର ଅଧିକାର
ବଞ୍ଚିତ କରିଛ ଯାର,
ସମ୍ମୁଖେ କରାଇ ଛିଡ଼ା
କୋଳେ ତାଙ୍କୁ ଦେଇନାହଁ ଥାନ,
ହୋଇବ ଅପମାନିତ
ତାଙ୍କ ସାଥେ ହୋଇ ହେ ସମାନ ।

ମନୁଷ୍ୟର ପରଶରୁ ତାଙ୍କୁ ତୁମେ ରଖିଅଛ ଦୂରେ
ଘୃଣା କରିଅଛ ତୁମେ ମଣିଷର ପ୍ରାଣର ଠାକୁରେ ।
ବିଧାତାର ରୁଦ୍ର ରୋଷେ
ଦୁର୍ଭିକ୍ଷର ଦ୍ୱାରେ ବସେ,

---

'୧୦୭' କବିତାଟି ପ୍ରଥମ ପଲ୍ଲବର '୧୦' କବିତା

ଭାଗ କରି ଖାଇବାକୁ ହେବ
ସକଳର ସାଥେ ଅନ୍ନପାନ ।
ଅପମାନ ହେଲେ ହେଉ
ତାଙ୍କ ସାଥେ ହୋଇ ହେ ସମାନ ।

ତୁମରି ଆସନୁ ତାଙ୍କୁ ଦେଇ ନିଜେ ଠେଲି
ନିଜର ଶକ୍ତିକୁ ତୁମେ ନିର୍ବାସିତ କରିଅଛ ଖାଲି ।
କରିଛ ପଦ ଦଳିତ
ସେ ଯେ ଧୂଳି ଧୂସରିତ,
ତାଙ୍କ ପାଖକୁ ଓହ୍ଲାଇ ଆସ ତୁମେ ଚାଲି ।
ନ ହେଲେ ବା ନାହିଁ ପରିତ୍ରାଣ,
ଅପମାନ ହେଲେ ହେଉ
ଆଜି ତୁମେ ସବୁରି ସମାନ ।

ଯାହାକୁ ରଖିଛ ନୀଚେ
ସେ ତୁମକୁ ବାନ୍ଧିବ ନୀଚରେ
ପଛୁଆ ରଖିଛ ଯା'ରେ
ସେ ତୁମକୁ ଟାଣିବ ପଛରେ ।
ଅଜ୍ଞାନ ସେ ଅନ୍ଧକାରେ
ଘୋଡ଼ାଇ ରଖିଛ ଯାରେ,
ସେ ତୁମ ମଙ୍ଗଳ ପଥେ
ରଖିବେ ରେ ଘୋର ବ୍ୟବଧାନ,
ଅପମାନ ହେଲେ ହେଉ
ଆଜି ତୁମେ ସବୁରି ସମାନ ।

ଶତେକ ଶତାବ୍ଦୀ ଧରି ନତ ଶିରେ
ବହେ ସିଏ ଅପମାନ ଭାର,
ନର ନାରାୟଣ ସେତ,
କରି ନାହଁ ତାଙ୍କୁ ନମସ୍କାର ।
ନତ କରି ଆଖି,
ତାଙ୍କୁ ତୁମେ ଦେଖି ପାରୁନକି !
ଲୋଟନ୍ତି ଧୂଳିରେ ତଳେ
ପତିତର ସେଇ ଭଗବାନ
ଅପମାନ ହେଲେ ହେଉ
ଆଜି ତୁମେ ସବୁରି ସମାନ ।

ଦେଖିକି ପାରୁନ ତୁମେ
ମୃତ୍ୟୁଦୂତ ଛିଡ଼ା ସମ୍ମୁଖରେ
ଅଭିଶାପ ଆଙ୍କିଦିଏ
ତୁମର ସେ ଜାତି ଅହଂକାରେ ।
ସଭିଙ୍କୁ ନ ଡ଼ାକ ଯଦି
ରହିବ ଦୂରେଇ ଭାବି,
ନିଜକୁ ରଖିବ ବାନ୍ଧି, ଚଉଦିଗୁ ଭରି ଅପମାନ,
ମୃତ୍ୟୁ ଶେଷେ ହେବ ତେବେ
ଚିତାଭସ୍ମେ ସବୁରି ସମାନ ।



# ୧୦୯

ଛାଡ଼ନି ଆରେ ଧରିଥା'ଟାଣେ
ହୋଇବ ତୋର ଜୟ ।
ଅନ୍ଧକାର ଯାଉଛି କଟି
ନାହିଁରେ ଆଉ ଭୟ ।
ଏଇ ଦେଖ, ପୂର୍ବାଶାର ଭାଲେ
ନିବିଡ଼ ସେଇ ବନର ଅନ୍ତରାଳେ,
ପ୍ରଭାତୀ ତାରା ହୋଇଲାଣି ଉଦୟ
ନାହିଁରେ ଆଉ ଭୟ ।

ଏମାନେ ସବୁ ଅଟନ୍ତି ନିଶାଚର
ଆସ୍ଥା ନାହିଁ ନିଜରେ, ପରାପର,
ନିରାଶା ବା ଆଳସ୍ୟ, ସଂଶୟ
ଏ ନୁହେଁ କେବେ ପ୍ରଭାତର ଲୟ ।
ବାହାରେ ବେଗେ
ବାହାରି ଆସ ଆରେ,
ଊର୍ଦ୍ଧ୍ୱାକାଶ ହସଇ ଆଲୋକରେ ।
ଦେଖରେ ଶିର ତୋଳି
ଆକାଶ ଉଠେ ଝଳି ।
ଦେଖରେ ଦେଖ, ହେଲାଣି ଜ୍ୟୋତିର୍ମୟ
ନାହିଁରେ ଆଉ,
ନାହିଁରେ ଆଉ ଭୟ ।।



# ୧୧୦

ଅଛି ହେ ଅଛି ହୃଦୟ ମୋର ଭରି
ଏଥର ତୁମେ ଯା'ଖୁସି ତାହା କର,
ଏପରି ଯଦି ଅନ୍ତରରେ ବିରାଜୁଥିବ ମୋର
ଯା'କିଛି ଅଛି, ସକଳ ତୁମେ ହର ।

ପିପାସା ସବୁ ଯେଠାରେ ଅବସାନ
ସେଠାରେ ଯଦି ପୂର୍ଣ୍ଣକର ପ୍ରାଣ,
ତା'ପରେ ମୋର ଜୀବନ ମରୁ ବୁକେ
ଉଠିଲେ ଉଠୁ ରୌଦ୍ର ଝଡ଼
ଦୁଃଖ ନାହିଁ ଟିକେ ।

ଏଇ ଯେ ଖେଳା ଖେଳୁଛ କେତେ ଛଳେ,
ଏ ଖେଳ ମୋତେ ଲାଗଇ ଭାରି ଭଲ,
ଗୋଟିଏ ଦିଗେ ଭସାଅ ଆଖି ଜଳେ
ଅପର ଦିଗେ ଛୁଟଇ ହସ ରୋଳ ।

ଭାବେ ମୁଁ ଯେବେ ହଜାଇ ଅଛି ସବୁ
ତୁମକୁ ମୁହିଁ ପାଇଛି ଖୋଜି
ଭାବଇ ସଦା ପ୍ରଭୁ !
କୋଳରୁ କେବେ ଦେଲେ ବା ଦୂର କରି
ବୁକୁରେ ପରା ନିଅ ହେ ମୋତେ ତୋଳି ।
ପ୍ରଭୁ ! ନିଅ ହେ ମୋତେ ତୋଳି ।



# ୧୧୧

ହେ ପ୍ରଭୁ ଅନ୍ତର୍ଯ୍ୟାମୀ !
ଗର୍ବ କରି ମୁଁ, ତୁମରି ନାମକୁ
ନିତିନିତି ଜପୁନାହିଁ !
ମୋ ଛୋଟ ମୁହଁରେ ତୁମ ନାମ ପ୍ରଭୁ !
ଶୋଭାକି ପାଇବ କେବେ ?
ସମସ୍ତେ କରିବେ ଉପହାସ ମୋତେ
ଏତେବେଳେ ମନେ ଭାବେ ।
ମୋ ମୁଖରେ କ'ଣ ତୁମରି
ନାମଟି ସାଜେ ?
କଣ୍ଠେ ମୋ'ର ତୁମରି ନାମକି ବାଜେ ।

'ତୁମଠୁ ବହୁ ଦୂରରେ ଅଛି ମୁହିଁ
ଏଇ କଥାଟି ଜାଣିଚି ମୁହିଁ ସାଇଁ !
ଭଜନ ଆଉ କୀର୍ତ୍ତନରେ -
ଦେବାକୁ ପରିଚୟ,
ତୁମରି ଠାରେ ରଖିଛି ମୋର ଲୟ ।
ଏପରି ଏଇ ଛଦ୍ମବେଶ ତଳେ
ରହିଛି ମୁହିଁ, ଭାବିଲା ବେଳେ -
ଲାଜରେ ସଡ଼ି ମରେ ।

ମିଥ୍ୟା ଏଇ ଅହଂକାରୁ
ରକ୍ଷାକର ପ୍ରଭୁ !
ମୋ ଥାନେ ମୋତେ ଥୋଇ,
ସକଳ ଦୃଷ୍ଟି ଅନ୍ତରାଳୁ
ଦୂରେଇ ମୋତେ ନେଇ ।

ଏତିକି ପ୍ରଭୁ ! ରଖହେ ମୋର ମାନ
କରୁଣା କରି, କରହେ ତୁମେ
ନତ ନୟନ ଦାନ ।

ପାଇବି ବୋଲି ମାନ ଓ ସନମାନର
ଆଶା ନେଇ,
କରୁନି ପୂଜା, ଏ'ପୂଜାମମ
କରୁଣାଟିକେ ପାଇଁ ।
କେତେ ଯେ ନୂଆ ପାପ ଓ ଅପରାଧେ,
ଡ଼ାକିବି ନିତି ତୁମକୁ ପ୍ରଭୁ !
ଏ' ଧରା ଧୂଳି ପଥେ ।



## ୧୧୨

ମରଣ ଯେବେ ଧରିବ ଆସି ହାତ
କେ' କହେ ସବୁ ଯିବୁରେ ଏଥି ଛାଡ଼ି,
ଜୀବନେ ଯାହା ଅରଜି ଅଛୁ ଭବେ
ମରଣେ ତାହା ଦେବାକୁ ହେବ ବାଢ଼ି ।
ଆସିଲୁ ଯଦି ଏ ଭରା ଭଣ୍ଡାରରେ
ଶୂନ୍ୟ ହାତେ ଫେରିବୁ କେଉଁପରି ?
ନେବାର ଯୋଗ୍ୟ ଯା'କିଛି ଅଛି ଏଥି
ନେଇଯା ଆରେ, ପାଉଛୁ ଯେତେ ଭରି ।

ଆବର୍ଜନାର ବିରାଟ ବୋଝ
ବୋହୁଛୁ ଜୀବନରେ
ବିଦାୟ୍ ବେଳେ ଛାଡ଼ିଯା ତାହା
ନେଏ ନା ଅଯଥାରେ ।
ଆସିଛୁ ଯଦି ଏ ଧରା ଧାମେ
ରଜାର ବେଶ ଧରି,
ହସି ହସି ମୃତ୍ୟୁ ପଥେ
ଯାଆରେ ତୁହି ଚାଲି ।
ବିପୁଳ ଆନନ୍ଦରେ,
ଦେ' ଏ ରେ ଯୋଗ ସେ ଶେଷ ଉତ୍ସବରେ ।



## ୧୧୩

ନଦୀ ତୀର ଏଇ ଆଷାଢ଼ ପ୍ରଭାତ ପୁଣି
ନେଉଅଛି ମନ ନେଉଛି ହୃଦୟ୍ ଟାଣି ।
ସବୁଜ ନୀଳ ତା' ସୁବର୍ଣ୍ଣ ରୂପ ସୁଧା,
ବିଚ୍ଛୁରିତ ହୁଏ, ଆହା କେଡ଼େ ମନଲୋଭା ।
ଆକାଶର ତଳେ ମୂର୍ଚ୍ଛିତ ଯେଉଁ ବାଣୀ
ନେଉଅଛି ମନ, ନେଉଛି ହୃଦୟ୍ ଟାଣି ।

ତାର ପଥେ ପଥେ ବିପୁଳ ଏ ବସୁଧାରେ
ପ୍ରସ୍ଫୁଟିତ ଯେ ଅମାପ ପୁଷ୍ପ
ତାର ଦୁଇ ପଥଧାରେ ।

ଯେତେ ପାରୁ ସେତେ
ନେଇ ଯାଁରେ ଫୁଲ ତୋଳି,
ଗୁନ୍ଥି ଦେ'ରେ ଚାରୁ ଚେତନାର
ଚିନ୍ମୟ ଏକ ମାଳି ।
ଦିବସ ରଜନି ଭୁଲି ।
କର ତୁ ଅଙ୍ଗୀକାର,
ପ୍ରତ୍ୟେକ ଦିନ ଅଟଇ ଭାଗ୍ୟ ତୋର ।
ନଦୀ ତୀର ଏଇ ଆଷାଢ଼
ପ୍ରଭାତ ଶୋଭା,
ଏ ମନ ହୃଦୟ ଲୋଭା ।



## ୧୧୫

ଦୟା କରି ପ୍ରଭୁ ନିଜେ ଛୋଟ ହୋଇ
ଏ ଛୋଟ ଆଳୟେ ମୋର,
କର ଆହେ ଅଭିସାର ।
ତାହାଁ ହିଁ ତୁମର ମାଧୁର୍ଯ୍ୟ ସୁଧା
ଶାନ୍ତ କରୁ ଏ ନୟନର କ୍ଷୁଧା,
ଜଳେ ସ୍ଥଳେ ଏଇ ନିଖିଳ ବିଶ୍ୱପରେ
ପାଇଛି ତୁମକୁ ଅଜସ୍ର ରୂପଭାରେ ।

ଜନକ ଜନନୀ ରୂପରେ ତୁମକୁ
ପାଇଛି ବନ୍ଧୁ ରୂପେ,
ହୃଦୟ ଦେବାକୁ ଆସିଛ ମୋ ପୁରେ
ଛୋଟ ହୋଇ ଆପେ ଆପେ ।

'୧୧୪' କବିତାଟି ପ୍ରଥମ ସୋପାନର '୯୦' କବିତା

ତୁମେ ତ ବିଶ୍ୱନାଥ,
ମୋ ହାତରେ କ'ଣ ତୁମକୁ ମୁଁ କେବେ
କରି ପାରିବି କି ଛୋଟ !!
ଆସିଅଛ ତୁମେ ପିତା ମାତା ଆଉ
ବନ୍ଧୁ ହୃଦୟ ନେଇ,
କ୍ଷୁଦ୍ର ମୁଁ ଅଟେ,
ଜଣାଇବି ଆଉ ଜାଣିବି ତୁମକୁ
ଏଇ, ଛୋଟ ପରିଚୟ ଦେଇ ?



## ୧୧୬

ଯାତ୍ରୀ ମୁହିଁ ଆରେ ! ଯାତ୍ରୀ ମୁହିଁ ଆରେ !
ଅଟକି ମୋତେ ପାରିବେ ନାହିଁ,
ପାରିବେ ନାହିଁ କେ'ରେ ।
ସୁଖ ଦୁଃଖର ବନ୍ଧନ ସବୁ ମିଛ
ଗୃହ ବନ୍ଧନ ହୋଇଯିବ ଏବେ ପଛ,
ତଳକୁ ଟାଣୁଚି ବିଷୟର ବୋଝ ମୋତେ
ଛିନ୍ନ ହୋଇ ଯା' ପଡ଼ିଯିବ ଅବଶେଷେ ।

ଯାତ୍ରୀ ମୁହିଁ ଆରେ !
ପ୍ରାଣଭରା ଗୀତ ଗାଇଚାଲେ ପଥପରେ ।
ଦେହ ଦୁର୍ଗର ଖୋଲିଛି ସକଳ ଦ୍ୱାର
ଛିନ୍ନ ହୋଇବ ଶୃଙ୍ଖଳ ବାସନାର ।
ଭଲ ମନ୍ଦ କାଟି, ହେବି ମୁହିଁ ପାର ଆରେ
ଚାଲିବିରେ ମୁହିଁ, ଲୋକରୁ ଲୋକାନ୍ତରେ ।

---

'୧୧୬' କବିତାଟି ପ୍ରଥମ ପଲ୍ଲବର '୯୧' କବିତା

ଯାତ୍ରୀ ମୁହିଁ ଆରେ ।
ସକଳ ଭାର ରହିବ ମୋର ଦୂରେ ।
ଅନନ୍ତ ଏଇ ଆକାଶ ଡ଼ାକେ ମୋତେ -
ଭାଷାହୀନ ସେ ଅଜଣା ଗୀତ ସୁରେ ।
ସକଳ ରୂପେ, ପରାଣ ମୋର ଟାଣେ,
ଉନ୍ମନା ମୁଁ କାହାର ବଂଶୀ ତାନେ ।

ଯାତ୍ରୀ ମୁହିଁ ଆରେ !
ବାହାରି ଅଛି ମୁଁ ବଡ଼ିଭୋଅରୁ ରେ ।
ଶୁଭୁନି  ଦୂରୁ ପକ୍ଷୀର କଳନାଦ
ଜାଣିନି କେତେ ରାତିରୁ ମୁହିଁ
ଖୋଲିଛି ମୋର ପାଦ ।
ନିର୍ନିମେଷେ ଥିଲି ମୁଁ ଖାଲି ଚାହିଁ
ଅନ୍ଧକାରେ ଜାଗ୍ରତ ମୁଁ ରହି ।

ଯାତ୍ରୀ ମୁହିଁଆରେ ।
ଜାଣେନା ମୁହିଁ କା'ଘରେ ହେବି -
ଅତିଥି ଦିନାନ୍ତରେ ।
ତାରକା କେଉଁ ଜାଳେ ତା'ଦୀପ ତହିଁ,
ବତାଶ କାନ୍ଦେ କି ଫୁଲ ବାସ ପାଇଁ,
ଅନାଦି କାଳୁ ଚାହିଁଛି କିଏ ମୋତେ
ସ୍ନିଗ୍ଧ ତାର ନୟନ ତୋଳି ସତେ ।



# ୧୧୮

ଉଡୁଛି ଧ୍ୱଜା ଅଭ୍ର ଭେଦୀ ରଥେ
ବାହାରିଛନ୍ତି ପରାଣ ପ୍ରଭୁ ପଥେ ।
ଘର କୋଣରେ ରହିଛୁ କାହିଁ ବସି
ଆ'ରେ ଚାଲି, ଟାଣିବୁ ରଥ ରଶି ।
ଭିଡ଼ର ମଧ୍ୟେ ଧସେଇ ପଶି ଆଗେ
କୌଣସି ମତେ ହାତେଇ ନେ'
ଥାନଟି ତୋର ବେଗେ ।

ଅଛିକି ତୋର ଘରର କାମ କିଛି
ସେ ସବୁ କଥା ମନରୁ ଦେ' ପୋଛି ।
ଟାଣରେ ରଶି, ଲଗାଇ ଚିତ୍ତ କାୟା
ଟାଣରେ ଛାଡ଼ି ତୁଚ୍ଛ ପ୍ରାଣ ମାୟା ।
ଚାଲରେ ଟାଣି ଆଲୋକ ଅନ୍ଧକାରେ
ନଗର ଗ୍ରାମ ନିବିଡ଼ ଅରଣ୍ୟରେ ।

ଏଇ ଯେ ଚକ ଘୂରୁଛି ଝଣଝଣି
ଅନ୍ତରେ କି ଶୁଣୁନୁ ତାର ବାଣୀ ।
ରକ୍ତେ ଖେଳେ ପ୍ରାଣର ଜାଗରଣ
ଗାଉନି ମନ ମରଣଜୟୀ ଗାନ ?
ଆକାଙ୍‌କ୍ଷା ତୋ' ବନ୍ୟା ବେଗେ ଆରେ
ଛୁଟେନା କି ତା' ବିପୁଳ ଭବିଷ୍ୟରେ ?



---

ଗୀତାଞ୍ଜଳିର '୧୧୯' କବିତାଟି ପ୍ରଥମ ପଲ୍ଲବର '୧୧' କବିତା

# ୧୨୦

ସୀମାର ମଧ୍ୟେ ଅସୀମ ତୁମେ
ବଜାଅ ତୁମ ସୁର
ମୋ'ରି ମଧ୍ୟେ ପ୍ରକାଶ ତୁମେ
ତାହାହିଁ ସୁମଧୁର ।
କେତେବର୍ଣ୍ଣେ କେତେ ଗନ୍ଧେ
କେତେ ଗାନେ କେତେ ଛନ୍ଦେ
ଅରୂପ ତୁମ ରୂପର ଲୀଳା
ଜାଗେ ପରାଣ ପୁର ।
ମୋରି ମଧ୍ୟେ ପ୍ରକାଶ ତୁମେ
ତାହାହିଁ ସୁମଧୁର ।

ତୁମର ମୋ'ର ମିଳନ ହେଲେ
ସକଳ ଯାଏ ଖୋଲି
ବିଶ୍ୱସାଗର ତରଙ୍ଗ ତୋଳି
ତହିଁରେ ଉଠେ ଦୋଳି ।
ତୁମ ଆଲୋକର ନଥାଏ ଛାୟା
ମୋ'ରି ମଧ୍ୟେ ପାଏ ସେ କାୟା,
ମୋରି ସେଇ ଅଶ୍ରୁଜଳେ
ହୁଅଇ ସିଏ ସୁନ୍ଦର ବିଧୁର,
ମୋ'ରି ମଧ୍ୟେ ତୁମର ଶୋଭା
ଏପରି ସୁମଧୁର ।।



'୧୨୧' କବିତାଟି ପ୍ରଥମ ପଲ୍ଲବର '୫୬' କବିତା

# ୧୨୨

ମାନ ସମ୍ମାନ ଆରାମ ଶୟନ
ନୁହେଁ ତୁମ ଅନୁସରି,
ସବୁ ଛାଡ଼ି ଆଜି ଆନନ୍ଦ ମନେ
ତ୍ୟାଗ ପଥେ ଯାଅ ଚଳି ।
ଆସ ହେ ବନ୍ଧୁ ! ପ୍ରିୟ ସଖା ତୁମେ
ଯାତ୍ରା ବାଢ଼ିବା ସାଥିହୋଇ ଆମେ,
ସେଇ, ଅପମାନିତର ପୁରେ,
ଗଭୀର ଆନନ୍ଦରେ ।

ନିନ୍ଦାକୁ କରି ଭୂଷଣ ଜୀବନେ,
କଣ୍ଟକ ଗଳାହାର,
ମଥା ଟେକି ଆମେ ତୋଳି ନେବା ସବୁ
ମାନ ଅପମାନଭାର ।
ଦୁଃଖୀର ଶେଷ ଆଳୟ ବୁକୁରେ
ସେଇ ଧୂଳି ଧାରେ ଲୋଟିଯିବା ଆରେ,
ତ୍ୟାଗର ଶୂନ୍ୟ ପାତ୍ରଟି ନେଇ
ଅନନ୍ଦ ରସ ଭରି,
ସବୁ ଛାଡ଼ି ଆଜି ଆନନ୍ଦ ମନେ
ତ୍ୟାଗ ପଥେ ଯିବା ଚଳି ।



'୧୨୧' ଓ '୧୨୩' କବିତା ପ୍ରଥମ ପଲ୍ଲବର '୫୬' ଓ '୮୫' କବିତା
'୧୨୪' ଓ '୧୨୫' କବିତା ପ୍ରଥମ ପଲ୍ଲବର '୩୬' ଓ '୬' କବିତା

## ୧୨୬

ନିନ୍ଦା ଓ ଦୁଃଖ ଅପମାନେ ଯେବେ,
ଆଘାତ ଅଛି,
ଜାଣିଅଛି ତହିଁ ହରାଇବାର ତ
ନଥାଏ କିଛି ।
ଧୂଳି ଧୂସରିତ ଆସନେ ଯେବେ
ବସିଥାଏ, ତଳ ବୋଲି ନଭାବେ,
ସଙ୍କୋଚହୀନ ହୋଇ,
ଚାହିଁଥାଏ ତୁମ ପ୍ରସାଦ ପାଇଁ ।

ଲୋକେ ଯେତେବେଳେ କହନ୍ତି, ଭଲ
ସୁଖର ବେଳ,
ସେ ସୁଖରେ ଥାଏ କେତେ ଯେ ଛଳ ।
ଭଲ ରୂପେ ତାହା ଜାଣିଛି ମୁହିଁ
ଘୂରିବୁଲେ ସେଇ ମିଥ୍ୟାକୁ ବୋହି
ଶିରରେ ମୋର ।
ତୁମ ପାଶେ ପ୍ରଭୁ ! ଯିବାକୁ ମୁଁ କେବେ
ପାଏନି ବେଳ ।
ପାଏନି ବେଳ ।



'୧୨୬' କବିତା ପ୍ରଥମ ପଲ୍ଲବର '୮' କବିତା

# ୧୨୮

ସରୁ ମୋଟା ଏଇ ଦୁଇଟି ତାରେ
ଜୀବନ ବୀଣାଟି ଗଢ଼ା ଯାଇଅଛି
ଠିକ୍ ସୁରେ ତାହା ନବାଜେ ଆରେ !

ମୂର୍ଚ୍ଛିତ ହୁଏ ବେସୁରା ତାନ,
ବ୍ୟଥାତୁର ଅଟେ ପରାଣମମ ।
ହଠାତ୍ ସେ ଗାନ ଥମଇ ବାରେ,
ଜୀବନ ବୀଣା ମୋ'ବାଜେ ନାହିଁ ଆରେ !
ସଠିକ୍ ସୁରେ ।
ଏ ବେଦନା ବୋଝ
ପାରୁନି ବୋହି,
ତୁମରି ସଭାକୁ ଆସି ସରମରେ
ଯାଉଛି ନଇଁ ।
ଗୁଣୀଜନ ପାଶେ ବସିବା ପାଇଁ
ଯୋଗ୍ୟତା ନାହିଁ ।
ସଭା ସଦନର ବାହାର ଦ୍ୱାରେ
ଛିଡ଼ା ହୋଇଥାଏ ସଭିଙ୍କ ପରେ ।
ଜୀବନ ବୀଣା ମୋ ବାଜୁନାହିଁ ଆରେ !
ସଠିକ ସ୍ୱରେ ।
ଗଢ଼ା ଯାଇଅଛି ମୋଟା ଆଉ ସରୁ
ଦୁଇଟି ତାରେ ।



# ୧୨୯

ଗାଇଲା ପରି ଗାଇନି କିଛି ଗୀତ
ଦେବାର ପରି ମୁଁ କିଛି ଦେଇନି ତ ।
ଭାବୁଚି ସତେ ରହିଲା ସବୁବାକି
ତୁମକୁ ପ୍ରଭୁ ! ଦେଇଛି ସଦା ଫାଙ୍କି ।
କେବେ ହେବ ଜୀବନ ପୂର୍ଣ୍ଣ ମମ
ଏଇ ଜୀବନର ପୂଜାର ଅବସାନ ?

ମୋ ମନ ଭରି
ତୋଳେ ମୁଁ ଅର୍ଘ୍ୟ କେତେ
ଅପର ସେବା କରେ ମୁଁ ଯେତେ ଯେତେ ।
ନିଜର ଦୈନ୍ୟ ଲୁଚାଇବାକୁ ଯାଇ
ସତ୍ୟ, ମିଥ୍ୟା, ସଜାଇ ଦିଏ ମୁହିଁ
ପ୍ରଭୁ !
ତୁମରି ପାଶେ ଗୋପନ କିଛି ନାହିଁ,
ପୂଜାରେ ତୁମ ସାହସ ଲଭି
ଯା' କିଛି ଅଛି, ଅରପି ଦିଏ ପଦେ,
ଅନାବୃତ ଦରିଦ୍ର ପ୍ରାଣ ଏ'ଯେ ।
ନିଜର ଦୈନ୍ୟ ଲୁଚାଇବାକୁ ଯାଇ
ସତ୍ୟ ମିଥ୍ୟା ସଜାଇ ଦିଏ ମୁହିଁ ।।



# ୧୩୦

ପ୍ରଭୁ !
ଜୀବନେ ମୋର କରିବି ବୋଲି
ତୁମରି ଲୀଳା ଖେଳା,
ନେଇଛି ବରି ମୁହିଁ ଏ
ଭବ ଲୀଳା ।
ଯିବରେ ଖୋଲି ଘରର ସବୁ ଦ୍ୱାର
ଘୁଞ୍ଚିଯିବ ସକଳ ଅହଂକାର ।
ଆନନ୍ଦମୟ ତୁମର ଏ ସଂସାର
ବାକିଆ କିଛି ରହିବ ନାହିଁ ମୋର ।

ଗଲେବି ମରି ବଞ୍ଚିବି ମୁହିଁ ଭବେ
ମୋ'ରି ମଧ୍ୟେ ତୁମର ଲୀଳା -
ପ୍ରକଟ ହେବ ଯେବେ ।
ବାସନା ସବୁ ହୋଇବ ମୋର ଦୂର
ତୁମରି ପ୍ରେମେ ମିଳାଇବାକୁ ସ୍ୱର ।
ବିଚିତ୍ର ଏ ଜୀବନ ମୋର
ସୁଖେ ଦୁଃଖେ ଭରା,
ତୁମରି ବିନା ଆଉତ କିଛି
ରହିବ ନାହିଁ ପରା ।
ନେଇଛି ବରି ମୁହିଁ ଏ -
ଭବଲୀଳା ।
କରିବି ବୋଲି ତୁମର ଲୀଳା ଖେଳା ।



# ୧୩୧

ଦୁଃସ୍ୱପ୍ନ କେଉଁଠୁ ଆସି-
ଜୀବନରେ କରେ କୋଳାହଳ,
କାନ୍ଦି ଉଠି ଜାଗି ଉଠେ ଶେଯେ
କିଛି ନାହିଁ, ଦେଖେ ମା' କୋଳ ।
ଭାବିଥିଲି ଆଉ କିଏ ବୋଲି
ପ୍ରାଣ ପଣେ ଭୟେ, ଲଢୁଥିଲି
ତୁମ ହସ ଦେଖିବା ମାତ୍ରକେ
ବୁଝିନେଲି -
ତୁମେ ମୋତେ କରିଛ ପାଗଳ,
ଦୁଃସ୍ୱପ୍ନ କେଉଁଠୁ ଆସି କରେ କୋଳାହଳ ।

ଏ ଜୀବନ ସୁଖ ଦୁଃଖେଭରା
ଯେତେ ଅବା କିଛି ଆଉ
ନାହିଁ ତାହା ଛଡ଼ା,
ତାହାହିଁ ତ ମୋର ସବୁକିଛି,
ଆଉ କ'ଣ ଅଛି ?

ଅନ୍ଧକାର କଟିଯିବ ନୟନରୁ ମୋର
ନିମିଷକେ ପ୍ରଭାତ ଆଲୋକେ -
ପରିପୂର୍ଣ୍ଣ ତୁମରି ସମ୍ମୁଖେ ।
କଟି ଯିବ ସବୁ କୋଳାହଳ
ଅଶାନ୍ତ କଲ୍ଲୋଳ ।



'୧୩୨' କବିତା ପ୍ରଥମ ପଲ୍ଲବର '୧୦୧' କବିତା

## ୧୩୩

ହେବନି ଶେଷ ତୁମକୁ ଖୋଜା, ମୋର
ଜୀବନ ଶେଷ ହୋଇବା ଯାଏ, ଚାଲିବ ନିରନ୍ତର।
ଯିବି ମୁଁ ଚଳି ଜୀବନ ନବାଲୋକେ
ନୂତନ ଦେଖା ଦେଖିବି ମୋର ଆଖେ,
ହୋଇ ମୁଁ ନୂଆ, ସେ ନବାଲୋକ ପୁରେ
ହୋଇବ ବନ୍ଧା-
ନବ ମିଳନର ଡୋରେ।
ଚାଲିବି ନିରନ୍ତର,
ହେବନି ଶେଷ ତୁମକୁ ଖୋଜା ମୋର ।

ତୁମର ଅନ୍ତ ନାହିଁ ହେ ! ନାହିଁ ଅନ୍ତ
ବାର ବାର ତୁମେ ହେ ନୂଆ-
ଲୀଳାରେ ଲୀଳାୟିତ ।
ଜାଣିନି ମୁହିଁ ଏଥର ପଥେ
ତୁମକୁ ପ୍ରଭୁ !
ଭେଟିବି କେଉଁ ବେଶେ,
ଖେଳିବ ପ୍ରାଣେ ନୂତନଭାବ
ନବୀନ ଉଲ୍ଲାସେ।
ପ୍ରଭୁ ! ଚାଲିବି ନିରନ୍ତର,
ହେବନି ଶେଷ ତୁମକୁ ଖୋଜା ମୋର ।



'୧୩୪' କବିତାଟି ପ୍ରଥମ ପଲ୍ଲବର '୫୮' କବିତା ।

## ୧୩୫

ଆଗେ ପଛେ ମୋତେ ବନ୍ଧନ କର ଯେବେ
ମନେ କରେ ଆଉ ରକ୍ଷାନାହିଁଟି ପରା,
ଯେତେବେଳେ ତୁମେ ଠେଲିଦିଅ ମୋତେ ନୀଚେ
ଭାବେ ମୁହିଁ ଆଉ ହୋଇପାରିବିନି ଛିଡ଼ା ।

ତୁମେ ପୁଣି ଆସି ବନ୍ଧନ ଦିଅ ଖୋଲି
ନେଇଯାଅ ମୋତେ, ନେଇଯାଅ ବୁକେ ତୋଳି ,
ଚିରଦିନ ମୋତେ ବାହୁରେ ଦୋଳାଇ ତବ
ଏଇପରି କେତେ ଦେଇଛ କରୁଣା ଢ଼ାଳି ।

ଭୟଦେଇ ମନେ
କରିଛ ନିଦ୍ରାଭଗ୍ନ
ନିର୍ଭୟ କରି, କରିଛ ନିଦ୍ରା ମଗ୍ନ ।
ଦେଖା ଦେଇ ମୋତେ
ଯାଅ ଚାଲି ଡାକିଦେଇ,
ଲୁଚିଯାଅ କେଣେ
ଖୋଜିଲେ ମିଳନି, କାହିଁ ।
ମନେକରେ ବାରବାର,
ହରାଇଲି କ'ଣ ସତରେ ପ୍ରଭୁଙ୍କୁ ମୋର !
ଏଇପରି ଭାବେ ମନେ,
କିଛିକ୍ଷଣ ପରେ ତୁମ ଡାକ ପୁଣି ଶୁଣେ ।



# ୧୩୬

ଯେତେଦିନ ତୋର ଶିଶୁଟିଏ ପରି
ଦୁର୍ବଳ ଦେହ ମନ,
ତୋର ଅନ୍ତର ଅନ୍ତପୁରରେ
ରହିଥା' ଯେତେଦିନ ।
ଅଳ୍ପ ଆଘାତେ ପଡ଼ିଯିବୁ ଆରେ
ଏ ଦେହ ବହିବ ଅଳ୍ପ ଦାହରେ,
ଅଳ୍ପ ଧୂଳିରେ ହୋଇଯିବୁ ତୁ ମଳିନ
ତୋର ଅନ୍ତର ଅନ୍ତପୁରରେ
ରହିଥା' ଯେତେଦିନ ।

ଯେତେବେଳେ ତୁହି ଶକ୍ତିପାଇବୁ
ଭରିଯିବ ତୋର ପ୍ରାଣ
ଅଗ୍ନି-ଉଚ୍ଛୁଳା ଅମୃତ ତୁହି
କରି ପାରିବୁ ରେ ପାନ ।
ଯେତେବେଳେ ତୁହି
ବାହାରେ ଆସିବୁ ଛୁଟି
ଶୁଦ୍ଧ ରହିବୁ ଧୂଳିରେ ଗଲେବି ଲୋଟି ।
ଅଙ୍ଗେ ବହିବି ବନ୍ଧନ ଭାର
ରହିବୁରେ ସ୍ୱାଧୀନ,
ତୋର ଅନ୍ତର, ଅନ୍ତପୁରରେ
ରହିଥା' ଯେତେଦିନ ।



## ୧୩୭

ମୋରଚିତ୍ତ,ତୁମର ନିତ୍ୟ
ସତ୍ୟହେବ କେବେ ?
ଏପରି ଏକ ସୁଦିନ ପ୍ରଭୁ !
ଆସିବ ମୋର ଯେବେ ।
ସତ୍ୟ ସତ୍ୟ  ସତ୍ୟ ଜପି
ସକଳ ବୁଦ୍ଧି ସତ୍ୟେ ଥାପି,
ସୀମାବନ୍ଧନ ପାର ହେବି
ଏଇ ନିଖିଳ ଭବେ,
ସତ୍ୟ ତୁମର ପୂର୍ଣ୍ଣ ପ୍ରକାଶ
ଦେଖିବି ତେବେ ।

ତୁମକୁ ମୁହିଁ ଦୂରେଇ ଦେଇ
ଅସତ୍ୟରେ ବୁଡ଼ିଛି ମୁହିଁ,
ଅନର୍ଥରେ ଭରିଛି ମନ
ସେଇ, ଅପଣକତି ରାଜପଣେ
ତାହା ହିଁ ନ୍ୟାୟ୍ ମଣେ !
ଅହଂକୁ ମୋର ଦେବି ମୁଁ ଯଦି ପୋଛି
ପାଖକୁ ତୁମ ଯିବି ମୁଁ ଯଦି ଘୁଞ୍ଚି,
ବଞ୍ଚି ଯିବି ତେବେ,
ସତ୍ୟ ଆହେ ! ସତ୍ୟହେବ
ତୁମରି ମଧ୍ୟେ ମରଣ ହେବ ଯେବେ,
ସତ୍ୟ ଆହେ ! ସତ୍ୟହେବ ତେବେ ।।



'୧୩୮' କବିତାଟି ପ୍ରଥମ ପଲ୍ଲବର '୩୪' କବିତା ।

# ୧୩୯

ପ୍ରଭୁ !
ଯା' ଦେଇଛ ମୋର
ଏ' ପ୍ରାଣଭରି,
ଦୁଃଖ ହେବନି ଏବେ-
ଯଦି ମୁହିଁ ଯିବି ହେ ମରି ।
ଦିନରାତି ଯାଏ କେତେ ଦୁଃଖେ ସୁଖେ
କେତେ ସ୍ୱର ବାଜେ ମୋର ଏଇ ବୁକେ,
କେତେ ରୂପେ ତୁମେ ଆସ ମୋର ଘରେ
କେତେ ରୂପେ ନିଅ ମୋ ମନହରି ।
ଦୁଃଖ ହେବନି ଏବେ ଯଦି-
ମୁହିଁ ଯିବି ହେ, ମରି ।

ତୁମକୁ ପରାଣେ ନେଇନି ବରଣ କରି
ପାଇନି ପରାଣେ, ସକଳ ପୂର୍ଣ୍ଣକରି ।
ଯା' ପାଇଛି ତାହା ଭାବିଛି ଭାଗ୍ୟ ବୋଲି,
ଯେ ପରଶ ତୁମେ ଦେଇଛ ପ୍ରଭୁ ହେ ! ତୋଳି ।
''ତୁମେ ଅଛ'' ଏହା ଜାଣେ ମୁଁ
ହୃଦୟେ ମମ,
ଆହେ ସୁନ୍ଦର ଆହେ ମୋ ପରାଣ ତମ !
ସେଇ ଭରସାରେ ବାହିବି
ମୋର ତରୀ,
ଦୁଃଖ ହେବନି ଏବେ ଯଦି
ଯିବି ମରି ।।



# ୧୪୦

ମୋ, ଜୀବନ ତରୀ
ମାଝିରେ ମାଝି !
ଶୁଣୁନୁ କି ଦୂର ସେପାରି
ବଂଶୀ ଉଠୁଛି ବାଜି ।
ତରୀ କି ତୋର ଦିନର ଶେଷେ
ଅଟକିବ ଆସି ଏ ଘାଟ ପାଶେ ?
ସେଠାରେ ସନ୍ଧ୍ୟା ଅନ୍ଧକାରେ
ଦେଖୁଛୁ କି ତୁହି ପ୍ରଦୀପ ଜଳେ ।
ମାଝିରେ ମାଝି....।

ସେପାରି ବଂଶୀ ଉଠୁଛି ବାଜି ।
ଲାଗୁଛି ମନେ ମୋ ଲାଗୁଛି ମନେ
ମନ୍ଦ ମଧୁର ଏଇ ପବନେ,
ସିନ୍ଧୁ ସେପାରି ହସଟି କା'ର-
ଭାସୁଛି ତା'ର ।
ଅନ୍ଧାର ଭେଦି ଆସୁଛି ଆଜି,
ଶୁଣି ପାରୁନୁ କି
ମାଝିରେ ମାଝି !

ଆସିଲା ବେଳେ ମୁଁ କୁସୁମ କେତେ
ଆଣିଥିଲି ତୋଳି ଯାହାକୁ ଯେତେ,
ସତେଜ ରହିଛି ସେଥିରୁ କିଛି
ନେଇଯାଇ ଡାଲା ଦେ'ଏରେ ସାଜି ।
ମୋ ଜୀବନ ତରୀ ମାଝିରେ ମାଝି !
ଶୁଣୁନୁ କି ଦୂର ସେପାରି ବଂଶୀ
ଉଠୁଛି ବାଜି ।।



## ୧୪୧

ମୁଁ ଭଲ ଭାବରେ ଆହେ !
ମନ ଶରୀରର ଏ କଳା ଛାଇକୁ
ଲିଭାଇ ଦେବାକୁ ଚାହେଁ ।

ଏଇ ଅଗ୍ନିରେ ଜାଳି ଦେବି ମୁହିଁ
ଏଇ ସାଗରରେ ବୁଡ଼ାଇବି ତହିଁ,
ଏଇ ଚରଣରେ ସକଳ ମାୟାକୁ
ଦଳି ଦେବି ମୁହିଁ ଆହେ !
ମନ ଶରୀରରୁ ଏ କଳା ଛାଇକୁ
ଲିଭାଇ ଦେବାକୁ ଚାହେଁ ।

ଯେଉଁଠିକି ଯାଏ ଦେଖେ ମୁଁ ତାହାକୁ
ବସିଥାଏ ଦୃଢେ ଭିଡ଼ି ଆସନକୁ
ଲାଜେ ଯାଏ ମନେମରି,
ଏଇ ସୁନିବିଡ଼ କଳାଛାଇ ପ୍ରଭୁ !
ନେଇ ଯାଅ ଅପସରି ।

ମୋର  ଅନୁଭବେ ଜାଣି ଅଛି ମୁହିଁ
ତୁମ ପାଇଁ ବାଧାନଥାଏ ତ କାହିଁ ।
ଦେଖାଦିଅ ପ୍ରଭୁ ! ପୂର୍ଣ୍ଣ ସ୍ୱରୂପେ ମୋତେ,
ଦୂର ହୋଇ ଯାଉ ମୋହ ମାୟା ମୋର ଯେତେ ।
ଯାଉ ସବୁ ଅପସରି
ମନ ଶରୀରକୁ କଳାଛାଇ ଅଛି ଘେରି ।



## ୧୪୪

ନାମଟି ଯେଦିନ ଲୁଚିବ ପ୍ରଭୁ !
ବଞ୍ଚିବି ସେଦିନ ମୁକ୍ତ ହୋଇ,
ଜନମ ହେବି ମୁଁ ତୁମରି ମଧ୍ୟେ
ନିଜର ସପନ ଲିଭାଇ ଦେଇ ।
ତୁମ ହାତ ଲେଖା ଢ଼ାଙ୍କି ଦେଇ ମୁଁ
ନିଜ ନାମାଙ୍କନ କରିଛ ଗାରେ
କେତେଦିନ ଆଉ କାଟିବି ଜୀବନ
ଏପରି ଭୀଷଣ ବିପଦ ଭାରେ ।

ସମସ୍ତଙ୍କ ବେଶ ଛଡ଼ାଇ ନେଇ ମୁଁ
ସଜାଇ ରଖିଛି ନିଜକୁ ନିଜେ,
ସକଳ ସ୍ୱରକୁ ଚପାଇ ଦେଇ ମୁଁ,
ନିଜ ସ୍ୱର ଉଚ୍ଚେ ବଜାଇ ରଖେ ।

---

**'୧୪୨'-'୧୪୩'** କବିତା ପ୍ରଥମ ପଲ୍ଲବର '୯୬' ଓ '୨୯' କବିତା

ଲୁଚି ଯାଉ ବେଗେ ଏ ନାମ ଟେକ
ତୁମ ନାମ ପ୍ରଭୁ ! ନେବ ଏ ମୁଖ ।
ସକଳ ସାଥିରେ ମିଶିବ ସେଦିନ
ନାମହୀନ ତା'ର ସେ ପରିଚୟେ,
ରହିଅଛି ପ୍ରଭୁ ! ତୁମରି ଲୟେ ।



## ୧୪୬

ତୁମରି ଦୟା ଚାହିଁନି ଯଦି ଜାଣି
ତଥାପି ତୁମେ ଦୟାରେ ମୋତେ
କୋଳକୁ ନିଅଟାଣି ।
ମୁଁ ଯାହା ଗଢ଼ି ତୋଳେ
ଆନନ୍ଦେ ରହି ଭୁଲେ,
ସୁଖର ଉପାସନା
କରେ ମୁଁ ଫଳ ଫୁଲେ ।
ଏ ଧୂଳି ଖେଳ ଘରେ
ରଖନି ଘୃଣା ଭରେ ।
ପ୍ରଭୁ ! ଜଗାଅ ଦୟାକରି
ଆଘାତ ଦେଇ ବାରେ ।

ଦ୍ୱିଧା ସଦା ସତ୍ୟ ଦିଏ ଢ଼ାଙ୍କି
ଆଉବା କିଏ ତୁମରି ବିନା-
ଫୁଟାଇ ପାରିବ କି ?

---

'୧୪୫' କବିତା ପ୍ରଥମ ପଲ୍ଲବର '୨୮' କବିତା

ମୃତ୍ୟୁ ଭେଦି ପଡ଼ଇ ସୁଧାଝରି ।
ଅତଳ ସେଇ ଦୀନତା ରୂପୀ
ଶୂନ୍ୟ ଉଠେ ଭରି ।
ପତନ ବ୍ୟଥା ବ୍ୟଥିତ କଲାବେଳେ
ଚେତନା ଆସି ଜାଗଇ ମନ ତଳେ,
ଧ୍ୱନିତ ହୁଏ ଗଭୀର ତୁମ ବାଣୀ
ବିରୋଧ କୋଳାହଳେ,
ତଥାପି ତୁମେ ଦୟାରେ ମୋତେ
ନିଅ ହେ ଟାଣି କୋଳେ ।



## ୧୪୭

ଜୀବନ ସାରାଯେତେ
ହୋଇନି ପୂଜା,
ଜାଣିଛି ତାହା କେବେ
ହୋଇନି ହଜା ।

ଯେ ଫୁଲ ନ ଫୁଟୁଣୁ
ଲୋଟିଛି ମହି,
ଯେ ନଦୀ ମରୁ ବୁକେ
ଲିଭିଛି ବହି ।
ଜାଣେ ମୁଁ ଜାଣେ ତାହା
ହଜିନି ପରା,
ହୋଇନି ଯେତେ ପୂଜା
ଜୀବନ ସାରା ।

ଜୀବନେ ଆଜି ଯାହା
ରହିଛି ପଛେ,
ଜାଣେ ମୁଁ ତାହା ଗଣା
ହେବନି ମିଛେ ।
ଆମର ଅନାଗତ
ଆମର ଅନାହତ,
ତୁମରି ବୀଣା ତାରେ
ବାଜୁଛି ପରା,
ଜାଣିଛି ତାହା କେବେ
ହୋଇନି ହରା ।



## ୧୫୦

ତୁମରି ସାଥେ ବିରୋଧ ନିତି
ପାରେନା ସହି ଆଉ,
ଦିନକୁ ଦିନ ଯାଉଛି ଜମି
ତୁମରି ଋଣ ଭାଉ ।

ସୁବେଶେ ସବୁ ତୁମକୁ ପ୍ରଭୁ !
କରନ୍ତି ନମସ୍କାର,
ମଳିନ ବେଶେ ଲୁଚିଛି ମୁହିଁ
ରହେନି ମାନ ମୋର ।

'୧୪୮'-'୧୪୯' କବିତା ପ୍ରଥମ ପଲ୍ଲବର '୧୦୩' ଓ '୭୬' କବିତା

କହିବି କିସ ବେଦନା ଭାରେ
　　　　ନିରବି ଅଛି ମନ,
ମୋ ମନ କହି ପାରୁନି ଖୋଲି
　　　　ତୁମଠି ଭଗବାନ ।

ଫେରାଅ ନାହିଁ ଏବାର ତାରେ
　　　　ନିଅହେ ଅପମାନରୁ ଦୂରେ
କରହେ ପ୍ରଭୁ ! ତୁମର ତାକୁ-
　　　　ଚରଣାଶ୍ରିତ ଦାସ,
ପୂରାଅ ତା'ର ମନର ଅଭିଳାଷ ।
　　　　ପ୍ରଭୁ ! ମନର ଅଭିଳାଷ ।



## ୧୫୩

ପ୍ରେମ ଦୂତଙ୍କୁ ମୋ
　　　　ପଠାଇବ ପ୍ରଭୁ, ଯେବେ
ସକଳ ଦ୍ୱନ୍ଦ୍ୱ ଘୁଞ୍ଚିଯିବ ମୋର ତେବେ ।
ଆଉ ଯିଏ ସବୁ ଆସନ୍ତି ଘରକୁ ମୋର
ଭୟ ଦେଖାଇ ସେ ଶାସନ୍ତି ବାର ବାର ।
ଦୁରନ୍ତ ମନ ଦୁଆର ବନ୍ଦ ଥାଏ,
ଦ୍ୱାର ମାନେ ନାହିଁ ସରବେ
　　　　ଫେରାଇ ଦିଏ ।

---

'୧୫୧'-'୧୫୨' ପ୍ରଥମ ପଲ୍ଲବର '୧୭' ଓ '୩୨' କବିତା

ସେ ଆସିଲେ ସବୁ ଖୋଲିଯିବ ଦ୍ୱାର ଗୋଟି
ସେ ଆସିଲେ ସବୁ ବନ୍ଧନ ଯିବ ତୁଟି
ସେତେବେଳେ ଘରେ
କେ ରଖିବ ମୋତେ ଧରି ?
ସେ ଡାକର ଡାକ, ଦେବାକୁ ପଡ଼ିବ ତୋଳି ।

ଆସିଲେ ଆସନ୍ତି ସିଏ
ଏକା ଏଇ ପୁରେ,
ଗଳାରେ ତାଙ୍କ ଫୁଲ ମାଳାଟିଏ ଝୁଲେ ।
ସେ ମାଳାରେ ଯେବେ
ବାନ୍ଧିବେ ମୋତେ ଟାଣି,
ହୃଦୟ ମୋ'ର ନିରବିବ ତହିଁ ପୁଣି ।



## ୧୫୪

କଣ୍ଠେ ମୋ ଗାନ ତୋଳିଅଛ ପ୍ରଭୁ !
କେତେ ମତେ କେତେ ଛଳେ,
କେତେ ସୁଖରେ ବା ବୁଡ଼ାଇଛ ମୋତେ
କେତେ ଯେ ନୟନ ଜଳେ ।

ଧରା ଦେଇ ତୁମେ ଦିଅନାହିଁ ଧରା,
ପାଶେ ଆସିତୁମେ ଚାଲିଯାଅ ପରା,
ପରାଣେ ମୋର
ବ୍ୟଥା ଭର ପଳେପଳେ,
କଣ୍ଠେ ମୋ ଗାନ ତୋଳିଅଛ ପ୍ରଭୁ !
କେତେ ମତେ କେତେ ଛଳେ ।
ବୁଡ଼ାଇ ନୟନ ଜଳେ ।

କେତେ ମତେ କେତେ ତୀବ୍ରତା ଭରେ
ସଜାଅ ତୁମର ବୀଣା
ଶତଛିଦ୍ର କରି ଜୀବନ ବଂଶୀ
ବଜାଅ ହେ, ତୁମେ ସିନା ।
ତୁମ ସ୍ୱର ଲୀଳା ଗରଭୁ
ଜନମ ମୋର,
ତୁମ, ଚରଣ ତଳର
କର ମୋତେ କିଙ୍କର ।
କେତେ ମତେ କେତେ ଛଳେ
ବୁଡ଼ାଇ ନୟନ ଜଳେ ।



## ୧୫୫

ଭାବଇ ମୁହିଁ ଏଥର ହେଲା ଶେଷ
କାହିଁ ବା ହୁଏ ଶେଷ ?
ସଭାରୁ ତୁମ ପହଞ୍ଚି ଯାଏ
ଆଉଥରେ ନିର୍ଦ୍ଦେଶ ।
ନୂତନ ଗାନେ ନୂତନ ରାଗେ
ନୂତନ କରି ହୃଦୟ ଜାଗେ,
କାହିଁ ଯେ ଦୂରେ ମୁଁ ଘୁରେ ଘୁରେ
ନଥାଏ ମୋ ଉଦ୍ଦେଶ୍ୟ ।

ସନ୍ଧ୍ୟାର ସେ ସୁବର୍ଣ୍ଣ ଆଭା
ସାଥିରେ ମିଳି ତାନ
ପୂରବୀରେ କରୁଛି ଶେଷ
ଯେବେ ମୁଁ ମୋର ଗାନ,
ନିଶୀଥିନୀର ଗଭୀର ସ୍ୱରେ
ପରାଣ ମୋର ଯେବେରେ ପୂରେ,
ସେତିକିବେଳେ ନୟନେ ମୋର
ନ ରହେ ନିଦ୍ରା ଲେଶ,
ଭାବଇ ମୁହିଁ ଏଥର ହେଲାଶେଷ ।
କାହିଁ ବା ହୁଏ ଶେଷ ?



## ୧୫୬

'ଶେଷ'ର ମଧ୍ୟେ 'ଅଶେଷ' ଅଛି
ଏଇ କଥାଟି ମନେ,
ଆଜିତ ମୋ'ରି ଗାନର ଶେଷେ
ଜାଗଇ ଅନୁକ୍ଷଣେ ।
ସୁର ଯାଇଛି ଥମିରେ ତା'ର
ତଥାପି ତାହା-
ଚାହେଁ ନା ଥମିବାକୁ,
ନିରବତାରେ ବାଜେ ରେ ବୀଣା
ପ୍ରୟୋଜନ, ନଥାଏ ବାଜିବାକୁ ।

ତାରରେ ଯେବେ ଆଘାତ ଲାଗେ
 ବାଜେରେ ସୁରେ ସୁରେ,
ଗମ୍ଭୀର ଯେ ଗୀତଟି ବଡ଼
 ରହେ ତା' ଦୂରେ ଦୂରେ ।
ଆସର ସବୁ ଆଳାପ ଗଲେ ସରି,
ଶାନ୍ତ ବୀଣା ବୁକେ ତା' ଆସେ ଝରି ।
ସନ୍ଧ୍ୟା ଯଥା ଆସଇ ଦିନ ଶେଷେ
 ତୋଳେ ତା' ତାନ-
 ପ୍ରାଣଭରା ଆବେଶେ ।
'ଶେଷ'ର ମଧ୍ୟେ 'ଅଶେଷ' ଅଛି
 ଏଇ କଥାଟି ମନେ,
ଆଜିତ ମୋର ଗାନର ଶେଷେ
 ଜାଗଇ ଅନୁକ୍ଷଣେ ।।



ମୂଳ କବିତାଞ୍ଜଳିର ଶେଷ '୧୫୭' କବିତାଟି ପ୍ରଥମ ପଲ୍ଲବର '୨୪' କବିତା

## ଶ୍ରୀ ନରସିଂହ ମିଶ୍ର । ଜନ୍ମ ୨.୬.୧୯୩୨

ଔପନ୍ୟାସିକ **ଶ୍ରୀ ନରସିଂହ ମିଶ୍ର** ଓଡ଼ିଆ ସାହିତ୍ୟର ଏକ ବହୁମୁଖୀ ପ୍ରତିଭା । ସେ ଉପନ୍ୟାସ, କ୍ଷୁଦ୍ରଗଳ୍ପ, କବିତା, ପ୍ରବନ୍ଧ, ଅନୁବାଦ, ଶିଶୁସାହିତ୍ୟ, ଲୋକସାହିତ୍ୟ, ନାଟକ ପ୍ରଭୃତି ବିଭାଗରେ ଲେଖନୀ ଚାଳନା କରି ୬୫ ରୁ ଊର୍ଦ୍ଧ୍ୱ ପୁସ୍ତକ ପ୍ରକାଶ କରିଛନ୍ତି ।

ତାଙ୍କର ମୌଳିକ ଜନପ୍ରିୟ ଉପନ୍ୟାସ ମଧ୍ୟରେ ସାକେତ ରାଜବଧୂ, ଊର୍ମିଳା, ଶକୁନି, ଦେବର୍ଷି ନାରଦ, ନିଦ୍ରାବତୀ ନଦୀ, ବାଲିଭର୍ତ୍ତି, ଅମୃତକୁଣ୍ଡ ଓ ଅଳିଦୂର୍ବା ପ୍ରଭୃତି ଅନ୍ୟତମ ।

କ୍ଷୁଦ୍ରଗଳ୍ପ ମଧ୍ୟରେ, ବେରିଂ ଚିଠି, ହେମଶଙ୍ଖ, ପ୍ରଥମ ପୁରୁଷ, ଠାକୁରେ ମନକଥା ଜାଣିଲେ, ସରଗରୁ ଇଁବ ମରତ ମାଟି ପ୍ରଧାନ ।

ଅନୁବାଦ କ୍ଷେତ୍ରରେ, ଇଂରାଜି, ସଂସ୍କୃତ, ହିନ୍ଦି ଏବଂ ବଙ୍ଗଳା ଭାଷାରୁ ତାଙ୍କର କେତୋଟି ଉଲ୍ଲେଖଯୋଗ୍ୟ ଅନୁବାଦ ଅଛି । ସେଗୁଡ଼ିକ ମଧ୍ୟରେ, ବେଳାଭୂମି, କାଦମ୍ବରୀ ରସମଞ୍ଜରୀ, କୃଷ୍ଣକଳି ଏବଂ ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କର ଗୀତାଞ୍ଜଳି ଅନ୍ତର୍ଭୁକ୍ତ ।

ଏହି ପରିଣତ ବୟସରେ ମଧ୍ୟ ଶ୍ରୀ ମିଶ୍ରଙ୍କର ଲେଖନୀ ଚଳଚଞ୍ଚଳ ।

